# ପୃଥିବୀର ଲୋକକଥା

(ଭିଏତ୍‌ନାମ)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତ, ଏମ୍. ଏ., ବି. ଇଡ୍

ସମ୍ପାଦନା

ଶ୍ରୀ ଲକ୍ଷ୍ମୀଧର ମହାନ୍ତ, ବି. ଏସ୍‌ସି., ଏଲ୍. ଏଲ୍. ବି.

# PRUTHIBIR LOKAKATHA

( VIETNAM )

# ପୃଥିବୀର ଲୋକକଥା

( ଭିଏତ୍‌ନାମ )



ପ୍ରକାଶକ :

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

ବକ୍ସିବଜାର ରୋଡ୍, କଟକ-୧

ତୃତୀୟ ସଂସ୍କରଣ

୧. ୧୨. ୧୯୯୦

ପ୍ରଚ୍ଛଦପଟ—ଶ୍ରୀ ରବିନାରାୟଣ ନାୟକ

ମୁଦ୍ରାକର : ପଦ୍ମାଳୟା ପ୍ରକାଶନୀ

ଶଙ୍କରପୁର, କଟକ-୧୨

ମୂଲ୍ୟ—ଟ ୭-୦୦ ବନ୍ଧାଇ—ଟ ୯-୦୦

# ଭିଏତ୍‌ନାମ

ଯେ ନ ଜାଣିଛୁ ନାଇଁ, ଯେଉଁ ହ୍ୱରଷ୍ଟପ୍ନ ଜାଣିଛୁ, ଭିଏତ୍‌ନାମ ନାଁଟି ସେ ଶୁଣିଲେ, ସୁଦୂର ଅଣ୍ଟାତକୁ ତାର ମନଟା ଟାଣି ହୋଇଯାଏ ।

ଦ୍ୱିତୀୟ ଶତାବ୍ଦୀର କଥା । ସେତେବେଳକୁ କଳିଙ୍ଗ ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଲମ୍ବିଥିଲା । କଳିଙ୍ଗ ସାମ୍ରାଜ୍ୟର ଲୋକେ ଇଣ୍ଡୋନେସିଆରେ ବସତି ସ୍ଥାପନ କରିଥିବା ଜଣାପଡେ । ପରେ ସେମାନେ ଭିଏତନାମର ଲୋହିତ ନଦୀ ଆଉ ମେକଙ୍ଗ ନଦୀ ମଝିରେ ଥିବା ଉର୍ବର ଅଞ୍ଚଳରେ ଗୋଟିଏ ରାଜ୍ୟ ସ୍ଥାପନ କଲେ । ତାର ନାଁଟି ସେମାନେ ରଖିଲେ ଚମ୍ପା । ତାର ପ୍ରଥମ ରାଜଧାନୀର ନାମ ଇନ୍ଦ୍ରପୁରୀ । ପରେ ସେମାନେ ଏହାକୁ ବିଜୟକୁ ଉଠାଇ ଆଣିଥିଲେ ।

ଚମ୍ପା ଥିଲା ଏକ ସମୃଦ୍ଧ ଏବଂ ପରାକ୍ରମୀ ଦେଶ । କୁବଲାଇ ଖାଁଙ୍କର ଆକ୍ରମଣରୁ ସେ ନିଜକୁ ବଞ୍ଚାଇ ରଖିପାରିଥିଲା । ସବୁ ସୌଭାଗ୍ୟ ଓ ଔଦ୍ଧତ୍ୟ ସବୁଦିନ ପାଇଁ ରହେ ନାହିଁ । ଚମ୍ପା ଦେଶର ମଧ୍ୟ ବିପର୍ଯ୍ୟୟ ଘଟିଥିଲା ।

୧୪୭୧ । ଏହାର ଉତ୍ତରରେ ଥିବା ଭିଏତ୍‌ନାମୀଙ୍କ ଆକ୍ରମଣରେ ଚମ୍ପା ଛାରଖାର ହୋଇଗଲା । ଚମ୍ପା ଆଉ ପୁନଃଗଠିତ ହୋଇ ପାରିଲା-ନାହିଁ । ଭିଏତ୍‌ନାମୀମାନେ ଏହାକୁ ଭିଏତ୍‌ନାମରେ ମିଶାଇଦେଲେ । ଚମ୍ପା ନାଁ ମଧ୍ୟ ଭୂପୃଷ୍ଠରୁ ଚିରଦିନ ଲୁପ୍ତ ହୋଇଗଲା ।

ଚମ୍ପାର ଲୋକମାନଙ୍କୁ ଚ୍ଚମ୍ କୁହାଯାଉଥିଲା । ଏମାନେ ଏବେ ମଧ୍ୟ ଭିଏତ୍‌ନାମରେ ବାସ କରନ୍ତି । ଏଇ ଚ୍ଚମ୍‌ରୁ ପରେ

ଭିଏତନାମର ବଣ୍ୟତା ସ୍ୱୀକାର ନକରି ଜଙ୍ଗଲକୁ ପଳାଇଗଲେ । ଏମାନେ ପାହାଡ଼ ଅଞ୍ଚଳରେ ଏବେବି ଅଛନ୍ତି । ସେମାନେ କୌପୀନ ବା ଲୁଗା ପିନ୍ଧନ୍ତି । ଗ୍ରେଷ୍ଠ ଗ୍ରେଷ୍ଠ ଗାଁରେ ରହନ୍ତି । ପିତୃପୁରୁଷଙ୍କ ପୂଜା ଏମାନେ କରନ୍ତି । ଜମିର ଉର୍ବରତା ବଢ଼ାଇବା ପାଇଁ ମଇଁଷି ବଳି ପକାନ୍ତି ।

ଆଜି ବି ଭିଏତନାମରେ ବହୁ ମନ୍ଦିର ଦେଖିବାକୁ ମିଳେ । ସେ ସବୁ ଚମ୍ପା ରାଜ୍ୟରେ ଭାରତୀୟମାନେ କରିଥିଲେ ।

ଭିଏତନାମର କଳା ବିଶେଷତଃ ନୃତ୍ୟକଳା ଏବେ ବି ଭାରତୀୟ ନୃତ୍ୟକଳାଦ୍ୱାରା ପ୍ରଭାବିତ ବୋଲି ଜଣାଯାଏ ।

ଭିଏତନାମ ଏସିଆ ମହାଦେଶର ଶେଷ ଭାଗରେ ଅବସ୍ଥିତ । ଉତ୍ତରରେ ଏହାର ଚୀନ, ପୂର୍ବରେ ଚୀନ ଉପସାଗର । ଦକ୍ଷିଣରେ ଶ୍ୟାମ ଉପସାଗର । ପଶ୍ଚିମରେ ଲାଓସ୍ ଆଉ କାମ୍ବୋଡ଼ିଆ, ଏହା ୮°.୩୩' ରୁ ୨୩°.୩୨' ଉତ୍ତର ଅକ୍ଷାଂଶ ଓ ୧୦୨°.୧୧'ରୁ ୧୦୯°.୨୮ ପୂର୍ବ ଦ୍ରାଘିମା ମଧ୍ୟରେ ସୀମାବଦ୍ଧ । ଏହାର ପୂର୍ବ-ପଟଟା ସମତଳଭୂମି । ପଶ୍ଚିମପଟେ ଆନାମ ପର୍ବତମାଳା । ଏହାର ସାମଞ୍ଜସ୍ୟ ଭାରତର ତାମିଲନାଡ଼ୁ, ଆନ୍ଧ୍ର, ଓଡ଼ିଶା ଓ ପଶ୍ଚିମବଙ୍ଗଳାର ସମୁଦ୍ର ଉପକୂଳ ଅଞ୍ଚଳ ସହିତ ଅଛି । ଏମାନେ ଏକ ଅକ୍ଷାଂଶରେ ଅବସ୍ଥିତ । ଉଭୟଙ୍କର ଗୋଟିଏ ପଟେ ସମୁଦ୍ର, ଆରପଟେ ପର୍ବତମାଳା ଅଛି ।

ଭିଏତନାମ ଦେଖିବାକୁ ଇଂରାଜୀ ଅକ୍ଷର 'S" ପରି ଲମ୍ବ ହୋଇ ଦେଖାଯାଏ । ଏହାର ଲମ୍ବ ୧୦୦୦ ମାଇଲ । ଉତ୍ତରପଟ ଓସାରିଆ । ସବୁଠୁ ବେଶି ଓସାରିଆ ଜାଗାର ଓସାର ହେଲା ୩୩୦ ମାଇଲ । ମଝିଟା ସରୁ, ସବୁଠାରୁ ସରୁ ଜାଗାର ଓସାର ୩୩ ମାଇଲ ।

ଏହାର ଚାରିଭାଗରୁ ତିନିଭାଗ ପାହାଡ଼ ଆଉ ମାଳଭୂମି । ଅବଶିଷ୍ଟ ଏକଭାଗ ସମତଳ । ଏହା ଲୋହିତ ଆଉ ମେକଙ୍ଗ ନଦୀର ଅବବାହିକା । ଲୋହିତ ଆଉ ମେକଙ୍ଗ ନଦୀରେ ଭାସି ଆସୁଥିବା ପଟୁରେ ଏହା ଗଠିତ । ବର୍ଷା ପ୍ରାୟ ୫୮" ରୁ ୧୧୬" (ଇଞ୍ଚ) ହୁଏ । ତେଣୁ ଏଠି ପ୍ରଧାନ ଫସଲ ଧାନ । ପ୍ରଚୁର ବି ଫଳେ ।

ଏଠି ନଈ ନାଳ ବହୁତ । ସବୁଠି ମାଛ ହାଉଯାଉ । ଏମିତି କି ଧାନ ଜମିରେ ବି ମାଛ ବହୁତ ।

ପ୍ରାୟ ଚାରିକୋଟି ଲୋକ ଏଠି ବାସ କରନ୍ତି । ଲୋକେ ଧାନ ଚାଷ କରନ୍ତି । ରେସମ ପୋକ ପାଳନ୍ତି, ମାଛ ଧରନ୍ତି ଆଉ ବାଉଁଶରେ ବିଭିନ୍ନ ପ୍ରକାର ଜିନଷ ତିଆରି କରନ୍ତି । ଏବେ ସ୍ୱାଧୀନ ଭିଏତ୍‌ନାମ କଳ କାରଖାନା ବସାଇଲାଣି । ଧାନ,କୋଇଲା, ରବର ଏମାନେ ବାହାରକୁ ପଠାନ୍ତି । ପ୍ରାୟ ୮° ଲକ୍ଷ ଲୋକ ଜଙ୍ଗଲରେ ଥାଆନ୍ତି । ସେମାନେ ଏବେ ବି ଅସଭ୍ୟ ବୋଲି କଥିତ । ସେମାନ-ଙ୍କର ଭାଷା ଅଲଗା । ଭାଷାର ଲିପି ମଧ୍ୟ ଅଛି ।

ଅଧିକାଂଶ ଲୋକ କୋକ୍‌ଗୁ ଭାଷାରେ କଥାବାର୍ତ୍ତା କରନ୍ତି । ଏଇ ଭାଷା ଚୀନା ଭାଷା ଦ୍ୱାରା ପରିପୁଷ୍ଟ । ଏଥିରେ ଭାରତୀୟ ଭାଷା ବି କିଛି କିଛି ମିଶିଛି । ଆଗରୁ ଚୀନାଲିପି ବ୍ୟବହାର କରାଯାଉ-ଥିଲା । ପାଦ୍ରୀଙ୍କ ପ୍ରଭାବରେ ଏମାନେ ରୋମାନ୍ ଲିପି ବ୍ୟବହାର କରନ୍ତି । ଏମାନଙ୍କର ସାହିତ୍ୟ ଚୀନ୍‌ଦ୍ୱାରା ପ୍ରଭାବିତ । ବହୁବର୍ଷର ସଂସ୍କୃତି ଯୋଗୁଁ ଗଳ୍ପ ଓ କବିତା ଉଚ୍ଚ କୋଟୀର । ନୃତ୍ୟକଳାରେ ଭାରତୀୟ ନୃତ୍ୟର ଛାପ ଅଛି । ପ୍ରାୟ ଅଧିକାଂଶ ଲୋକ ତାଓ ଓ ଚୀନ ବୌଦ୍ଧଧର୍ମରେ ଦୀକ୍ଷିତ ।

ଏଠାରେ ପାହାଡ଼ ଅଞ୍ଚଳରେ ଜଙ୍ଗଲ ବେଶ୍ ଅଛି । ସେଠି ହରିଣ, ଅରଣାମଇଁଷି, ବଣୁଆ ଗୋରୁ, ବାଘ, ହାତୀ ଅଜଗର୍‌ସାପ ବହୁତ ଥାଆନ୍ତି ।

ତିନିହଜାର ବର୍ଷ ଧରି ଏଠି ଲୋକମାନେ ରହି ଆସୁଛନ୍ତି । ଗୁମ୍ଫା ଖନନରୁ ବାହାରିଥିବା ବିଭିନ୍ନ ଜିନିଷରୁ ଏହା ପ୍ରମାଣିତ ହୋଇଛି । ଲୋହିତ ନଦୀର ଉତ୍ତର ଭାଗରେ ପ୍ରଥମ ଜନବସତି ହୋଇଥିଲା । ଉତ୍ତରରୁ ଆସିଥିବା ଚୀନ ଓ ଦକ୍ଷିଣରୁ ଆସିଥିବା ଇଣ୍ଡୋନେସିଆ ଲୋକଙ୍କର ସମିଶ୍ରଣରେ ଭିଏତ୍‌ନାମୀମାନଙ୍କ ସୃଷ୍ଟି । ପ୍ରଥମେ ଏଇ ଅଞ୍ଚଳର ନାଁ ଥିଲା ଭ୍ୟାନ୍ ଲ୍ୟାଙ୍ଗ ।

ଖ୍ରୀ:ପୂ: ତୃତୀୟ ଶତାବ୍ଦୀରେ ଚୀନର ନାମ୍ ଭିଏତ ସହିତ ଏ ଅଞ୍ଚଳ ମିଶିଗଲା । ଖ୍ରୀ: ପୂ: ୧୧୧ ରେ ଚୀନାମାନେ ନାମ୍‌ଭିଏତ-ରାଜ୍ୟକୁ ଚୀନ ସାଥିରେ ମିଶାଇ ଦେଲେ । ଚୀନ ଶାସନ ବିରୁଦ୍ଧରେ ଅନ୍ତକମ୍‌ରେ ଦଶଟି ବଡ଼ ଧରଣର ବିଦ୍ରୋହ ଭିଏତ୍‌ନାମୀମାନେ କରିଛନ୍ତି । କିନ୍ତୁ ସବୁଥର ସେମାନେ ହାରିଯାଇଛନ୍ତି । ସ୍ୱାଧୀନ ହାସଲ କରିପାରିନାହାନ୍ତି । ଯାହାହେଉ ୯୩୯ ଖ୍ରୀଷ୍ଟାବ୍ଦରେ ସେମାନେ ସ୍ୱାଧୀନ ହେଲେ । ଆସ୍ତେ ଆସ୍ତେ ସେମାନେ ବଳଶାଳୀ ହୋଇଉଠିଲେ । ୧୪୭୧ରେ ଆକ୍ରମଣ କରି ଚମ୍ପାକୁ ଧ୍ୱଂସ କରି ଦେଲେ । ନିଜ ନିଜ ଭିତରେ କଳହ ଯୋଗୁ ୧୫୩୨ ଖ୍ରୀଷ୍ଟାବ୍ଦରେ ଭିଏତ୍‌ନାମ ଦୁଇଭାଗ ହୋଇଗଲା । ଉତ୍ତରଟିର ନାଁ ହେଲା 'ଟନ୍‌କୀନ' ଦକ୍ଷିଣର ନାମ 'କୋଚୀନ ଚୀନ' । ଅଳ୍ପଦିନ ଭିତରେ ସେମାନଙ୍କର ପୁନର୍ମିଳନ ହୋଇ ପାରିଥିଲା । ତଥାପି ସପ୍ତାଦଶ ଶତାବ୍ଦୀରେ ପୁଣି ଭାଗ ଭାଗ ହୋଇଗଲା । ଏହା ଦେଢ଼'ଶ ବର୍ଷ ରହିଥିଲା ।

ଷୋଡ଼ଶ ଶତାବ୍ଦୀ । ପ୍ରଥମଥର ପାଇଁ ପର୍ତ୍ତୁଗୀଜମାନେ ଏଠି ପହଞ୍ଚିଲେ । ପଛେ ପଛେ ଆସିଲେ ଫରାସୀମାନେ । ପାଦ୍ରୀମାନେ ଏଠି ପହଞ୍ଚି ପ୍ରଚାରରେ ଲାଗିଗଲେ । ୧୭୮୭ ରୁ ୧୮୮୭ ମଧ୍ୟରେ ଫରାସୀମାନେ ସମଗ୍ର ଭିଏତ୍‌ନାମକୁ ସେମାନଙ୍କ ଶାସନକୁ ନେଇ ଇଣ୍ଡୋଚୀନ ସାଥିରେ ମିଶାଇ ଦେଲେ । ୧୯୦୨ ଖ୍ରୀଷ୍ଟାବ୍ଦରେ ବିପ୍ଳବର ପୁଣି ଆରମ୍ଭ । ଫରାସୀମାନେ ବହୁବାର ବିପ୍ଳବକୁ

ଦମନକରି ତାଙ୍କର ଶାସନ ଦୃଢ଼ କରିଥିଲେ ।

୧୯୪୧ ରେ ଦ୍ୱିତୀୟ ମହାସମର । ଜାପାନ ଧମକରେ ଫରା-ସୀମାନେ ଜାପାନର ବଶ୍ୟତା ସ୍ୱୀକାର କଲେ । ୧୯୪୫ରେ ୟୁରୋପର ଲୋକମାନେ ଯୁଦ୍ଧରେ ଜିତିବାକୁ ଆରମ୍ଭ କଲେ । ବାହା ଦେଖି ଜାପାନ ୧୯୪୫ରେ ଭିଏତ୍‌ନାମର ସ୍ୱାଧୀନ ଘୋଷଣା କରିଦେଲା । କିନ୍ତୁ ହୋ ଚୀ ମୀନ ଭିଏତ୍‌ନାମରେ ଗରିଲା ଯୁଦ୍ଧ ଆରମ୍ଭ କରି ଦେଇଥାଆନ୍ତି । ଯୁଦ୍ଧ ସରିଲାବେଳକୁ ହୋ ଚୀ ମୀନ ଉତ୍ତର ଭିଏତ୍‌ନାମ ଦଖଲ କରିସାରିଥିଲେ । ଦକ୍ଷିଣ ଭିଏତ୍‌ନା-ମକୁ ଇଂରେଜମାନଙ୍କ ସାହାଯ୍ୟରେ ଫରାସୀ ଦଖଲକଲା । ହେଲେ, ଜନମତ ପ୍ରବଳ ହେବାଯୋଗୁଁ ପୁଣି ଗୃହଯୁଦ୍ଧ ଲାଗିଗଲା । ୧୯୫୪ ଜେନେଭା ଚୁକ୍ତି ଅନୁସାରେ ଫରାସୀମାନେ ସେଠୁ ବିଦାହୋଇଗଲେ ।

ଭିଏତ୍‌ନାମ କିନ୍ତୁ ଦୁଇଭାଗ ହେଲା । ୧୯୫୬ରେ ଭୋଟରେ ଏକତ୍ରୀକରଣର ପ୍ରସ୍ତାବହେଲା । କିନ୍ତୁ ଦକ୍ଷିଣ ସରକାରଙ୍କୁ ସାହାଯ୍ୟ କଲା ଯୁକ୍ତରାଷ୍ଟ୍ର ଆମେରିକା । କମ୍ୟୁନିଷ୍ଟମାନଙ୍କ ଗରିଲା ଆକ୍ରମଣ ଦକ୍ଷିଣରେ ଥିବା ସରକାର ବିରୁଦ୍ଧରେ ଚାଲିଲା । ତାକୁ ପ୍ରତିହତ ପାଇଁ ଯୁକ୍ତରାଷ୍ଟ୍ର ଅଜସ୍ର ଅର୍ଥ ଓ ଜୀବନ ନଷ୍ଟକଲା । ଗଣତନ୍ତ୍ର ସେଠି ବଜାୟୀ ରଖିବା ଆଳରେ । କିନ୍ତୁ ସବୁ ଫେଲ୍ ମାରିଲା ।

୧୯୭୮ରେ ପୁଣି ଶାନ୍ତି ପ୍ରସ୍ତାବ ନେଇ ଲୋକମାନଙ୍କର ଭୋଟ ହେଲା । ୧୯୭୫ରେ ପୁଣି ଭିଏତ୍‌ନାମ ଏକାଠି ହେଲା । ଏହାର ପ୍ରସିଦ୍ଧ ବନ୍ଦର ସାଇଗନ, ହୋଇଫଙ୍ଗ ଓ ଟୁରାନ୍‌ସ । ଏଠାରେ ବିସ୍ତାର ରେଳ ଲାଇନ୍ ମଧ୍ୟ ଅଛି ।

ବର୍ତ୍ତମାନ ଏହାର ରାଜଧାନୀ ସାଇଗନ । ବହୁ ଉତ୍‌ଥାନ ପତନ ପରେ ପ୍ରାଚ୍ୟର ଏ ଛୋଟ ଦେଶଟି ଉନ୍ନତ ପଥରେ ଆଗେଇବାକୁ ଆଜି ଦୃଢ଼ ପ୍ରତିଜ୍ଞ ।



# ସୂଚୀପତ୍ର





# ମାଛିମଣ୍ଡା

ଅନେକ ଦିନ ତଳର କଥା । ଭିଏତ୍‌ନାମର ଗୋଟିଏ ଛୋଟ ଗାଁରେ ଗୋକ୍‌ତାମ୍ ଓ ତା ସ୍ତ୍ରୀ ନାମ୍‌ଦାଓ ରହୁଥିଲେ । ତାମ୍ ଧାନ ଚାଷ କରେ । ଦାଓ ଟସର ପୋକ ପାଳେ ସତ, ହେଲେ ସେଥିରେ ତାର ଜମା ଆଗ୍ରହ ନ ଥାଏ । ସେ କାମ କରିବାକୁ ଘୃଣା କରେ । ତା'ର ଇଚ୍ଛା—ସେ କେମିତି ବଡ଼ ଲୋକ ହୁଅନ୍ତା, ବଡ଼ ଘରଟିଏ କରନ୍ତା, ବହୁତ ଚାକର ଚାକରଣୀ ରଖନ୍ତା, ଆଉ ସେ କିଛି କାମ ନ କରି ଆୟସରେ ରହନ୍ତା ।

ଦିନକର କଥା । ସେତେବେଳକୁ ତାମ୍ କ୍ଷେତରେ । ଘରେ ଦାଓ ଏକୁଟିଆ । ହଠାତ୍ ଦାଓ ଅସୁସ୍ଥ ହୋଇପଡ଼ିଲା । ଅଳ୍ପ ସମୟ ଭିତରେ ମରିବି ଗଲା । ଘରେ ତ ଆଉ କେହି ନ ଥିଲେ, ତାମ୍ ଖବର ପାଇପାରିଲା ନାହିଁ । ଦି'ପହରେ ତାମ୍ ଘରକୁ ଆସି ଦେଖେ ତ, ଦାଓ ମରିଯାଇଛି । ସେ ବହୁତ କାନ୍ଦିଲା । ଦାଓ ପାଇଁ ଭଗବାନଙ୍କୁ ପ୍ରାର୍ଥନା କଲା । ହଠାତ୍ ସେ ଗୋଟିଏ ସ୍ୱପ୍ନ ଦେଖିଲା । ସେ ଅନୁଭବ କଲା—ଦାଓର ଶବଟିକୁ ସମୁଦ୍ର ଭିତରେ ଥିବା ମାୟୁ ପାହାଡ଼କୁ ନେଇଯିବାକୁ ସେ ଇସାରା ଦେଉଛି ।

ତାମ୍ ତ ଦାଓକୁ ଭଲପାଏ । ଦାଓକୁ ବଞ୍ଚାଇବାକୁ ତା'ର ଭାରି ଇଚ୍ଛା । କିନ୍ତୁ ଉପାୟ ତାର ଆଉ କିଛି ନଥିଲା । ସେଥିପାଇଁ ସ୍ୱପ୍ନର ଇସାରା ସେ ମାନିନେଲା । ତେଣୁ ସେ ଦାଓର ଶବକୁ ଡଙ୍ଗାରେ ଧରି ମାୟୁ ପାହାଡ଼ ଆଡ଼କୁ ବାହାରିଲା । ମାୟୁ ପାହାଡ଼ଟି ବହୁତ ଦୂର । ସେଠି ତାକୁ ଶୀଘ୍ର ପହଞ୍ଚିବାକୁ ହେବ । ଟିକିଏ ହେଳା ନ କରି ସେ ଭୁହାଇ ଭୁହାଇ ଆହୁଲା ମାରିଲା । ଶେଷରେ ସେ ମାୟୁ ପାହାଡ଼ରେ ପହଞ୍ଚିଲା । ସେତେବେଳକୁ ସେ

କ୍ଳାନ୍ତ ଆଉ ଅବସନ୍ନ ହେବାର କଥା । କିନ୍ତୁ ତାର ଉତ୍କଣ୍ଠା ବହୁତ । ଗୁପ୍ତାର ଇଙ୍ଗିତରେ ସେ ସେଠାକୁ ଆସିଛି । ସେ ହାଲିଆ କି କ୍ଳାନ୍ତ କିଛି ବି ଜାଣିପାରୁ ନଥିଲା ।

ପାହାଡ଼ ପାଖରେ ପହଞ୍ଚି ସେ ଉପରକୁ ଅନାଇଲା । ସେ ଦେଖିଲା—ପାହାଡ଼ ଉପରେ ଗୋଟିଏ ଜାଗାରେ ବହୁତ ଫୁଲ ଫୁଟିଛି । ଫୁଲଗୁଡ଼ିକ ବହୁତ ସୁନ୍ଦର । ସେହି ଜାଗାକୁ ଯିବ ବୋଲି ଡାମ୍ ବାହାରିଲା । କାନ୍ଧରେ ପାପ୍‌ର ଶବ । ପାହାଡ଼ଟି ଖାଡ଼ା । ଚଢ଼ିବା ଭାରି କଷ୍ଟ । ତଥାପି ଅତି କଷ୍ଟରେ ଡାମ୍ ସେଠି ପହଞ୍ଚି-ଗଲା । ଫୁଲ ଗଛ ପାଖରେ ପାପ୍‌ର ଶବକୁ ଶୁଆଇଦେଲା । ତା' ପାଖରେ ଆଣ୍ଠେଇକରି ଭଗବାନଙ୍କୁ ଅତି ବିକଳ ହୋଇ ଡାକିଲା । ହେଉଁକବେଳେ ବୁଢ଼ାଟିଏ କୁଆଡ଼ୁ ଆସି ସେଠାରେ ପହଞ୍ଚିଗଲା । ତା'ର ବାଳସବୁ ଧଳା । ଚମ ଧୁଡୁଧୁଡୁ । କିନ୍ତୁ ତା ଆଖି ଦି'ଟା ମଶାଲ ପରି ଜଳୁଥାଏ । ସେ ଡାମ୍‌କୁ ତା ଶିଷ୍ୟ ହୋଇ ସେଠାରେ ରହିବାକୁ କହିଲା । ଡାମ୍ କିନ୍ତୁ ରାଜି ହେଲାନାହିଁ । ବରଂ କହିଲା— "ପାପ୍‌କୁ ମୁଁ ଭାରି ଭଲପାଏ । ତା ବିନା ମୁଁ ବଞ୍ଚି ପାରିବ ନାହିଁ । ଦୟାକରି ପାପ୍‌କୁ ଫେରେଇ ଆଣନ୍ତୁ ।" ସେଥିପାଇଁ ସେ ବୁଢ଼ାକୁ କାକୁତି ମିନତି ହୋଇ ବହୁତ ଗୁହାରି କଲା । ତା ପାଦ ପାଖରେ ମୁଣ୍ଡ ବି ବାଡ଼େଇଲା ।

କିଛି ସମୟ ପାଇଁ ବୁଢ଼ା ଚୁପ୍ ହୋଇଗଲା । ଡାମ୍‌ର ମନେ ହେଲା, ବୁଢ଼ାଟି ଗମ୍ଭୀର ଭାବରେ କ'ଣ ଚିନ୍ତାକରୁଛି । ତା ପରେ ବୁଢ଼ାଟି ଡାମ୍‌କୁ ତାର ଆଙ୍ଗୁଠି ଟିକେ କାଟି ତିନି ଟୋପା ରକ୍ତ ପାପ୍ ଉପରେ ପକାଇବାକୁ ଆଦେଶଦେଲା । ତା କଥା ଅନୁସାରେ ଡାମ୍ ତା'ର ଆଙ୍ଗୁଠି କାଟି ଦେଲା । ସେଥିରୁ ବୋହୁଥିବା ରକ୍ତରୁ ତିନି ଟୋପା ପାପ୍ ଦେହରେ ପକାଇଦେଲା । ଯେମିତି ସେ ରକ୍ତ

ପଡ଼ୁଛୁ ସେମିତି ପାପ ବାଦକୁ ଉଠିଲାପରେ ଝାଡ଼ଝୁଡ଼ ହୋଇ ବସିଲା । ନିଜକୁ ଗୋଟିଏ ପାହାଡ଼ ଉପରେ ପୁଣି ସାମ୍‌ନାରେ ବୁଢ଼ାକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । କେମିତି ତାର ଶବ ମାୟା ପାହାଡ଼କୁ ଅଣାହେଲା, ଆଉ କେମିତି ସେ ଜୀବନ ପାଇଲା, ସେ ସବୁକଥା ବୁଢ଼ାଟି ତାକୁ ଠିକଣାକି କରି ବୁଝାଇ ଦେଲା । ତା ପରେ ବୁଢା ତାକୁ ହୁସିଆର କରିଦେଲା—ସେ ତାମ୍ ପାଖେ ସବୁଦିନ ରହିବ । ତା କଥା ମାନି ଚଳିବ । କଠିନ ପରିଶ୍ରମ ବି କରିବ । ଏସବୁ ନ କଲେ ଭଗବାନ ତାକୁ କଠୋର ଦଣ୍ଡ ଦେବେ । ବୁଢାଟି ତାପରେ କୁଆଡ଼େ ଚାଲିଗଲା ।

ପାପ୍ ବଞ୍ଚିଉଠିବାରୁ ତାମ୍ ବହୁତ ଖୁସି ହୋଇଗଲା । ଉଭୟେ ଆନନ୍ଦରେ ଘରକୁ ଡ଼ଙ୍ଗାରେ ବାହୁଡ଼ିଲେ । ସେମାନେ କିଛି ଖାଇନଥିଲେ । ସେମାନଙ୍କୁ ଭାରି ଭୋକ ହେଉଥିଲା । ବଜାରଟିଏ ଦେଖି ଡ଼ଙ୍ଗାକୁ ତାମ୍ କୂଳକୁ ଲଗାଇଦେଲା । ଡଙ୍ଗାରେ ପାପ୍‌କୁ ଛାଡ଼ି ଖାଦ୍ୟପାଇଁ ସେ ବଜାରକୁ ଚାଲିଗଲା ।

ପାପ୍ ଡଙ୍ଗାରେ ବସି ତାମ୍‌କୁ ଅପେକ୍ଷା କରିଥାଏ । ଏହି ସମୟରେ ସେଠାରେ ବଡ଼ ଡଙ୍ଗାଟିଏ ଆସି ଲାଗିଲା । ଡଙ୍ଗାଟି ଦେଖିବାକୁ ଭାରି ସୁନ୍ଦର । ତାର ମାଲିକ ଜଣେ ଧନୀ ବ୍ୟବସାୟୀ । ସେ ଡଙ୍ଗା ଭିତରେ ବସିଥିଲେ । ପାପ୍‌କୁ ଦେଖି ତାଙ୍କ ଡଙ୍ଗାକୁ ଡାକେଇ ପଠେଇଲେ । ଏକୁଟିଆ ବସି ବସି ପାପ୍‌କୁ ଖରାପ ଲାଗୁଥିଲା । ସୁବିଧା ମିଳିବାରୁ ସେ ଆଉ ଡଙ୍ଗାକୁ ଚାଲିଗଲା । ତାକୁ ବି ଭୋକ କରୁଥିଲା । ଚା' ଖାଇବାର ପ୍ରସ୍ତାବରେ ସେ ରାଜି ହୋଇ-ଗଲା । ଚା' ଖାଇବାବେଳେ ଗପ ବି ବେଶ୍ ଜମିଲା । ବ୍ୟବସାୟୀଟି ପାପ୍‌ର ସୌନ୍ଦର୍ଯ୍ୟର ଭୂରି ଭୂରି ପ୍ରଶଂସା କଲା । ପାପ୍ ବି ଫୁଲେଇ ନିଜର ପ୍ରଶଂସା ଶୁଣି ମନେ ମନେ ସେ ବେଶ୍ ଗର୍ବ ଅନୁଭବ କଲା ।

ବ୍ୟବସାୟୀଟି ଏହି ମଉକାରେ ତାଙ୍କ ସହିତ ବିବାହ ପାଇଁ ପ୍ରସ୍ତାବ ପକେଇଲା । ଫାପ ଦେଖିଲା—ବ୍ୟବସାୟୀଟି ବେଶ୍ ଧନୀ । ତାଙ୍କ ପାଖରେ ରହିଲେ ତାକୁ କାମ କରିବାକୁ ପଡ଼ିବ ନାହିଁ । ଆରାମରେ ରହିବ । ସେତ କାମ କରିବାକୁ ଘୃଣାକରେ । ମଉଜ ମଜଲିସ୍‌ରେ ରହିବାକୁ ଭଲପାଏ । ତେଣୁ ସେ ତାଙ୍କ କଥାରେ ରାଜି ହୋଇଗଲା । ତାମ୍ ବିଷୟରେ ପଦେ ବି କିଛି କହିଲା ନାହିଁ । ଫାପ୍‌ର ଆଗ୍ରହ ଦେଖି ବ୍ୟବସାୟୀଟି ତାକୁ ତାଙ୍କ ଡଙ୍ଗାରେ ବସାଇ ନେଇଗଲା ।

ତାମ୍ ଜଳଖିଆ ଧରି ଆସି ଦେଖେ ତ, ଡ଼ଙ୍ଗାରେ ଫାପ୍ ନାହିଁ । ଫାପ୍‌କୁ ନ ଦେଖି ସେ ଭାରି ବ୍ୟସ୍ତ ହୋଇପଡ଼ିଲା । ଫାପ୍‌ର ନାଁ ଧରି ଡ଼ାକି ଡ଼ାକି ଥକି ବି ଗଲା । ଉତ୍ତର କିନ୍ତୁ କିଛି ମିଳିଲା ନାହିଁ । ଅଳ୍ପ ଦୂରରେ ବୁଢ଼ା ନାଉରୀଟି ସବୁ କଥା ଲକ୍ଷ୍ୟ କରୁଥିଲା । ତାମ୍‌ର ବ୍ୟସ୍ତତା ଦେଖି ତାର ଦୟା ହେଲା । ପାଖକୁ ଆସି ତାମ୍‌କୁ ସବୁକଥା କହିଲା । ବ୍ୟବସାୟୀର ଠିକଣାଟି ମଧ୍ୟ ବତେଇଦେଲା । ଏସବୁ ଶୁଣି ତାମ୍ ଭାରି ରାଗିଗଲା । ସେ ଘରକୁ ଆଉ ବାହୁଡ଼ିଲା ନାହିଁ । ସିଧା ସେହି ବ୍ୟବସାୟୀଙ୍କ ଘରକୁ ଚାଲିଲା ।

ଅଳ୍ପଦିନ ଭିତରେ ସେ ବ୍ୟବସାୟୀଙ୍କ ଘରେ ଯାଇ ପହଞ୍ଚିଗଲା । ବ୍ୟବସାୟୀଙ୍କର ଏକ ବିରାଟ ଘର । ଆଗରେ ଫୁଲ ବଗିଚା । ଚାକର ଚାକରାଣୀ ବହୁତ । ଖବର ନଦେଲେ, ବ୍ୟବସାୟୀଙ୍କ ସାଥିରେ ଭେଟ ହୋଇପାରେ ନାହିଁ । ଚାକର ହାତରେ ଖବର ଦେଇ ତାମ୍ ବାହାରେ ବ୍ୟବସାୟୀଙ୍କୁ ଦେଖା କରିବାକୁ ଅପେକ୍ଷା କରିଥାଏ । ସେ ଦେଖିଲା, ଫାପ୍ ବଗିଚାରେ ଫୁଲ ତୋଳୁଛି । ତାମ୍ ଫାପ୍ ପାଖକୁ ଗଲା । ହଠାତ୍ ତାମ୍‌କୁ ଦେଖି ଫାପ୍

ଆଶ୍ଚର୍ଯ୍ୟ ହୋଇଗଲା । ଉଚ ବ ଗଲା । ପାପ୍ କହିଲା, ସେ ଯେଉଁ ମନ୍ଦାରେ ଅଛି, ତେଣୁ ତାମ୍ ସାଙ୍ଗରେ ଆଉ ଯାଇପାରିବ ନାହିଁ ।

ତାମ ତ ପାପ୍‌କୁ ଦେଖି ରାଗି ଯାଇଥିଲା । କିନ୍ତୁ ଟିକିଏ ହେଲେ ସେ ତାର ବିରକ୍ତିଭାବ ଦେଖାଇଲା ନାହିଁ । ବରଂ କହିଲା ସେ ପାପ୍‌କୁ ନେବାକୁ ସେ ଆସିନାହିଁ । ପାପ ତ ଏଠି ରହିଛି, ତା ସାଙ୍ଗରେ ତାର ଆଉ ସମ୍ପର୍କ ରହିବ ନାହିଁ । ତେଣୁ ତାକୁ ବଂଚାଇବା ପାଇଁ ସେ ଯେଉଁ ତିନି ଟୋପା ରକ୍ତ ଦେଇଛି, ପାପ୍ ତାକୁ ଫେରାଇଦେବା ଉଚିତ ହେବ । ସେଇ ତିନିଟୋପା ରକ୍ତ ଫେରାଇ ନେବାକୁ ସେ ଆସିଛି । ପାପ୍ ତା କଥାଶୁଣି ଆଶ୍ୱସ୍ତ ହେଲା । ତିନି ଟୋପା ରକ୍ତ ଦେଇ ଦେଲେ ତାକୁ ଆଉ ସିବାକୁ ପଡ଼ିବ ନାହିଁ । ତେଣୁ ସେ ରକ୍ତ ଦେବାକୁ ଖାଲି ତ ରାଜି ହେଲା ନାହିଁ—ସଙ୍ଗେ ସଙ୍ଗେ ଦେଇ ଦେଲେ ନିଷ୍କୃତି ପାଇଯିବ ବୋଲି ଭାବିଲା । ସେଥିପାଇଁ, ହାତରେ ଧରିଥିବା ଫୁଲତୋଳା ଛୁରୀରେ ଆଙ୍ଗୁଠିରୁ ଟିକେ ସେ କାଟି ଦେଇ ତାମ୍‌କୁ ହାତ ଦେଖାଇବାକୁ କହିଲା । ତାମ୍ ହାତ ଦେଖାଇଥାଏ । ପାପ୍‌ର ରକ୍ତ ତା' ହାତରେ ଟୋପା ଟୋପା ହୋଇ ଦୁଇ ଟୋପା ପଡ଼ିଲା । ଯେମିତି ତୃତୀୟ ଟୋପା ରକ୍ତ ତାମ୍ ହାତରେ ପଡ଼ୁଛି, ପାପ୍‌ର ସୌନ୍ଦର୍ଯ୍ୟ କୁଆଡେ ଉଭେଇଗଲା । ସେ ଅସ୍ତେ ଆସ୍ତେ ଶୁଖିଗଲା । ଶେଷରେ ସେ ଗୋଟିଏ ମଶା ହୋଇ ତାମ୍‌ର ମୁଣ୍ଡ ପାଖରେ ଗୁଣୁଗୁଣୁ ହୋଇ ବୁଲିଲା । ତା ଶବ୍ଦରୁ ଜଣାଯାଉଥିଲା ସତେ ଯେମିତି ସେ ବାରମ୍ବାର କହୁଛି "ମୁଁ ଭୁଲ୍ କଲି, ମୁଁ ଭୁଲ୍ କଲି । ମୋ ରକ୍ତ ମୋତେ ଫେରାଇ ଦିଅ ।"

ତାମ୍ ସେଠାରେ ଆଉ ମୁହୂର୍ତ୍ତେ ବି ଅପେକ୍ଷା କଲାନାହିଁ । ଦୌଡ଼ି ଦୌଡ଼ି ଡଙ୍ଗା ନିକଟକୁ ଚାଲି ଆସିଲା । ଆହୁଲା ମାରି ମାରି

ସେ ମାୟା ପାହାଡ଼ ପାଖକୁ ଫେରି ଆସିଲା । ବୁଢାଟିକୁ ପୁଣି ସେ ସେଠି ଭେଟିଲା । ତାର ଶିଷ୍ୟତ୍ୱ ଗ୍ରହଣ କଲା । ଯାପ୍‌ର କଥା ସବୁ ଶୁଣିସାରି ବୁଢ଼ାଟି କହିଲା "ଭବିଷ୍ୟତରେ ଯେତେ ମାଣ୍ଡମଣା ଜନ୍ମ ହେବେ, ସେମାନେ ସମସ୍ତେ ଯାପ୍‌ର ସେଇ ଛନଛୋପା ରକ୍ତ ଖୋଜି ବୁଲିବେ ।"

ଲୋକଙ୍କୁ ଭଲ ବ୍ୟବହାର ଦେଖାଇବା ଓ ଉପକାରୀ ଲୋକଙ୍କୁ ନ ଠକିବା ପାଇ ଏହା ଏକ ଚେତାବନୀ । ଏସବୁ ଯେ ନକରେ, ସେ ଯାପ୍ ପରି ଦୁଃଖପାଏ । ଏବେ ବି ଏହା ଉଏର୍‌ନାମ ଲୋକଙ୍କର ବିଶ୍ୱାସ ।

○—

# ଛାଇ

ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଚୀନର ବିଶାଳ ପ୍ରାଚୀର ଅନ୍ୟତମ । ବହୁଦିନ ପୂର୍ବେ ଏଇ ପ୍ରାଚୀର ନିର୍ମାଣ ହୋଇଥିଲା । ସେତେବେଳେ ଉଏର୍‌ନାମରେ କେତେଗୁଡ଼ିଏ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ ଥିଲା । ସେଥିରୁ ଗୋଟିକରେ ଜାନ୍ ଥି ହୋଯ୍ୱାଂ ରାଜା ଥାଆନ୍ତି । ସେ ତ ଘୋର ଅତ୍ୟାଚାରୀ, ତାଛଡ଼ା ପ୍ରଜାମାନଙ୍କ ଉପରେ ବହୁ ପ୍ରକାର କର ବି ଲଦି ଦେଇଥିଲେ । ଲୋକମାନେ ତାଙ୍କୁ ଝୁରି ଡରନ୍ତି । କେହି ତାଙ୍କ ଅତ୍ୟାଚାର ବିଷୟରେ ପଦେ ବି କହନ୍ତି ନାହିଁ ।

ଶିକ୍ଷିତବ୍ୟକ୍ତି, ବିଶେଷତଃ ଶିକ୍ଷକମାନଙ୍କ ପକ୍ଷେ କୌଣସି ଅତ୍ୟାଚାର ସହିବା କଷ୍ଟ । ସେମାନେ ସବୁବେଳେ ଅତ୍ୟାଚାର

ବିରୁଦ୍ଧରେ ଆନ୍ଦୋଳନ କରନ୍ତି । ସେଥିପାଇଁ ଶିକ୍ଷିତ ଲୋକଙ୍କୁ ରାଜା ହୋୟୁାଂ ଜମା ଭଲ ପାଉନଥିଲେ । ଶିକ୍ଷକମାନଙ୍କ ଉପରେ ତାଙ୍କର ଖୁବ୍ ରାଗ । ଟିକିଏ ଅଭିଯୋଗ ଶିକ୍ଷକମାନଙ୍କ ବିରୁଦ୍ଧରେ ପାଇଲେ ସେ ଅଭିଯୁକ୍ତ ଶିକ୍ଷକଙ୍କୁ ବନ୍ଦୀ କରୁଥିଲେ । କେତେକଙ୍କୁ ମଧ୍ୟ ପ୍ରାଚୀର ନିର୍ମାଣ କାର୍ଯ୍ୟରେ ଲଗାଇବା ପାଇଁ ଚୀନ୍ ପଠାଇ ଦେଉଥିଲେ ।

ଯେତେବେଳେ ହୋୟୁାଂଙ୍କ ରାଜ୍ୟରେ ଜଣେ ଯୁବକ ଶିକ୍ଷକ ଥାଏ । ତା ନାଁ ଘୁଇ । ତା ନିଜ ଗାଁର ଝିଅଟିକୁ ସେ ବାହାହୋଇ ଥିଲା । ତା ନାଁ ମ୍ଲି । ବାହାଘର ପରେ ସେମାନେ ସେଇ ଗାଁରେ ରହୁଥିଲେ । ମ୍ଲି. ମା ହେବାକୁ ଯାଉଥାଏ । ହଠାତ୍ ଦିନେ ଘୁଇକୁ ହୋୟୁାଂଙ୍କ ଲୋକମାନେ ଧରି ନେଇ ଜେଲ୍‌ରେ ପୁରାଇ-ଦେଲେ । ମାସକପରେ ମ୍ଲିର ପୁଅଟିଏ ହେଲା । ଘୁଇ ତ ଆଗରୁ ନାଁ ବାଛିଥିଲା । ତେଣୁ ମ୍ଲି ପୁଅର ନାଁ ଦେଲା ଚୀନ୍ । ଘୁଇ ପୁଅକୁ ଦେଖିପାରୁ ନଥିବାରୁ ମ୍ଲିର ଭାରି ଦୁଃଖହୁଏ । ଆଶାରେ ମଣିଷ ବଞ୍ଚେ । ଦିନେ ନା ଦିନେ ଘୁଇ ତା ପାଖକୁ ଫେରିଆସିବ ବୋଲି ମ୍ଲିର ଦୃଢ଼ବିଶ୍ବାସଥାଏ ।

କ୍ରମେ କ୍ରମେ ଚୀନ୍ ବଡ଼ ହେବାକୁ ଲାଗିଲା । କଥା କହି ଶିଖିଲା । ଅକ୍ଷର ଶିଖି ପାଠପଢ଼ିଲା । ମ୍ଲି ଘୁଇ ବଦଳରୁ ପୁଅକୁ ପାଠ ପଢ଼ାଏ । ସବୁବେଳେ ତାକୁ ତା ବାପା କଥା କହେ । ତା ବାପା ବିଦେଶରେ କାମ କରନ୍ତି ଓ ଅଳ୍ପ ଦିନ ଭିତରେ ଫେରି ଆସିବେ ବୋଲି ପ୍ରବୋଧ ମଧ୍ୟ ଦିଏ । ସବୁଦିନ ରାତିରେ ଶୋଇବାକୁ ଗଲାବେଳେ ମା ପୁଅ ଦୁହେଁ, ଘୁଇ ଶୀଘ୍ର ଫେରି ଆସିବାପାଇଁ ପ୍ରାର୍ଥନା କରନ୍ତି । ପୁଅ ଶୋଇ ପଡ଼ିଲେ ମ୍ଲି ଦୀପଟି ନେଇ ଝରକା ପାଖକୁ ଯାଏ । ସେଠି ଝୁଲା ଚୌକିରେ

ବସି ଗ୍ଭନ୍‌କୁ ଅପେକ୍ଷା କରେ। ଗ୍ଭତଟି ପାହିଯାଏ। ସବୁ ଗ୍ଭତ ଲୀର ଏମିତି ଭାବରେ କଟେ।

ଏହା ଭିତରେ ଚୀନ୍‌କୁ ଗ୍ଭରିବର୍ଷ ହୋଇଗଲାଣି। ଗୋଟିଏ ଗ୍ଭତର କଥା। ବାହାରେ ପ୍ରବଳ ଝଡ଼। ଘଡଘଡିରେ ଚୀନ୍‌ର ନିଦ ଭାଙ୍ଗିଗଲା। ସେ ଭୟରେ ଚିତ୍କାର କଲା। ଲୀ ଲ୍ୟାମ୍ପଟି ଗୋଟିଏ ଟୁଲ୍ ଉପରେ ରଖି ଚୀନ୍‌ର ଖଟପାଖକୁ ଗଲା। ତା ପାଖକୁ ଗଲାବେଳେ ଲୀର ଛାଇଟା କାନ୍ଥରେ ପଡ଼ିଲା। ଚୀନ୍ ଛାଇକୁ ଦେଖି ଡରିଗଲା।

ସେ ପଗ୍ଭରିଲା "ମା ଏଇଟା କ'ଣ?" ଲୀ କହିଲା—'ତୋ ବାପାର ଛାଇ।" ଚୀନ୍ କ'ଣ ଭାବିଲା କେଜାଣି, ସାଙ୍ଗେ ସାଙ୍ଗେ ଆଣ୍ଠେଇପଡ଼ି ହାତଯୋଡ଼ି ମୁଣ୍ଡ ନୁଆଁଇ କହିଲା—"ବାପା! ମୁଁ ଶୋଇବାକୁ ଯାଉଛି।" ସେଇଦିନୁଁ ପ୍ରତିଦିନ ଗ୍ଭତିରେ ଶୋଇବାକୁ ଯିବା ପୂର୍ବରୁ ଚୀନ୍ ଆଣ୍ଠୁମାଡ଼ି ବସି ହାତଯୋଡ଼ି ମୁଣ୍ଡ ନୁଆଁଇ କହେ— ବାପା, ମୁଁ ଶୋଇବାକୁ ଯାଉଛି।"

କିଛିଦିନ ପରର କଥା। ଗ୍ଭତ ବେଶୀ ହୋଇନଥାଏ। ଗାଁ ମୁଖିଆମାନେ ମନ୍ଦିରରେ ବସି ଲୀକୁ ଡକେଇ ପଠେଇଲେ। ଗାଁ ମୁଖିଆଙ୍କ କଥା ତ ଭାଙ୍ଗିହେବ ନାହିଁ। ତାଛଡା ନିହାତି ଜରୁରୀ କାମ ନଥିଲେ ସେମାନେ ଡ଼କାନ୍ତି ନାହିଁ। ତେଣୁ ତାକୁ ନିଶ୍ଚୟ ଯିବାକୁ ପଡ଼ିବ। ସେଥିପାଇଁ ସେ ଘରେ ତାଲା ଦେଇ ମନ୍ଦିରକୁ ବାହାରିଲା। ଏତିକବେଳେ ଅଗ୍ଭନକ ଭାବେ ଗ୍ଭନ୍ ଧଇଁସଇଁ ହୋଇ ପହଞ୍ଚି କହିଲା--"ମୁଁ ଫେରିଆସିଛି।" ଲୀ ତାକୁ କହିଲା—'ପାଟି ନକର ଚୁପ୍‌ଗ୍ଭପ୍ ଘରେ ଲୁଚିଯାଅ। ପୁଅ ଘରେ ଶୋଇଛି। ତାକୁ ଉଠାଇବ ନାହିଁ। ମୁଁ ସାଙ୍ଗେ ସାଙ୍ଗେ ଆସୁଛି।" ଏହା କହି ଶୀଘ୍ର ବାହାରିଗଲା।

ଅଳ୍ପ ସମୟ ପରେ ହଠାତ୍ ଚୀନ୍‌ର ନିଦ ଭାଙ୍ଗିଗଲା । ସେ ଉଠି କାନ୍ଦିଲା । ଘରର କବାଟ ପାଖକୁ ଯାଇ ଆସ୍ତେ ଆସ୍ତେ କହିଲା "ପୁଅ ଡର ନାହିଁ । ମୁଁ ତୋ ବାପା ଆସିଛି ।" କାନ୍ଦି କାନ୍ଦି ଚୀନ୍ କହିଲା, "ନାଁ ନାଁ ! ତମେ ମୋ ବାପା ନୁହଁ । ମୋ ବାପା ବିଦେଶରେ ଥାଆନ୍ତି, ସବୁଦିନ ରାତିରେ ମୁଁ ଶୋଇବାକୁ ଗଲାବେଳେ ସେ ଆସନ୍ତି । ତମେ ଚାଲିଯାଅ ।" ଏହା କହି ସେ ପୁଣି ଶୋଇ ପଡ଼ିଲା ।

ଚୀନ୍ ମହା ଅଡୁଆରେ ପଡ଼ିଗଲା । କିଛି ବୁଝି ପାରିଲା ନାହିଁ । ଲି କୁଆଡ଼େ ଗଲା, କିଛି ନ କହି ତରତର ହୋଇ ଚାଲିଗଲା । ପୁଅବି କହୁଛି, ବାପା ତାର ପ୍ରତିଦିନ ସେ ଶୋଇଲାବେଳେ ଆସେ । ତାହାହେଲେ, ଆଉ ଜଣେ ପୁରୁଷ ତା ଘରକୁ ପ୍ରତିଦିନ ଆସୁଛି । ଲି ତ କୁ ତାହାହେଲେ ଆଉ ଭଲ ପାଉନାହିଁ । ବୋଧହୁଏ ଆଉ ଥରେ ସେ ବାହା ହୋଇଛି । ଏକଥା ଭାବି ସେ ଖୁବ୍ ରାଗିଗଲା । ସେଠାରେ ମୁହୂର୍ତ୍ତେ ରହିବାକୁ ତାର ଆଉ ଆଗ୍ରହ ନଥିଲା । ସାଙ୍ଗେ ସାଙ୍ଗେ ଚାଲିଯିବା ପାଇଁ ସେ ବାହାରିଲା । ଲି ଠିକ୍ ସେହି ସମୟରେ ଆସି ପହଞ୍ଚିଗଲା । ପୁଲିସ ସହରକୁ ଆସି ତାକୁ ଖୋଜିଥିବାର ଖବର ଦେଲା । ଲି ଦେଖିଲା ଯେ, ଚୀନ୍ ରାଗରେ ତମତମ୍ ହେଉଛି । କାରଣ ଜାଣିବାକୁ ଲି ତାକୁ ପଚାରିଲା । ଚୀନ୍ କହିଲା "ତାକୁ ସେ ସନ୍ଦେହ କରୁଛି ।" କାହିଁକି ସନ୍ଦେହ କରୁଛି, ତା ବି କହିଲା । ଉତ୍ତରକୁ ଅପେକ୍ଷା ନକରି ସାଙ୍ଗେ ସାଙ୍ଗେ ଦୌଡ଼ି ସେ ବାହାରକୁ ଚାଲିଗଲା ।

ଲି ସବୁ କଥା ବୁଝିପାରିଲା । ଚୀନ୍‌ର ଦୁଃଖ ମଧ୍ୟ ସେ ନିଜେ ଅନୁଭବ କଲା । ସେ ବହୁତ କାନ୍ଦିଲା । ବାହାରକୁ ଆସି ଚୀନ୍‌କୁ

କେତେ ଖୋଜିଲା । ପାଇଲା ନାହିଁ । ସେତେବେଳକୁ ଗ୍ବନ୍ ବହୁତ ଦୂର ପଳେଇ ଯାଇଥିଲା । ଅତ୍ୟନ୍ତ ଦୁଃଖରେ ସେ ନଈକୂଳକୁ ଗଲା । ତାର ବଞ୍ଚିବାର ଆଗ୍ରହ ମରିଗଲା । ସେଠି ଉଚ୍ଚ ପଥରଟିଏ ଉପରୁ ସେ ନଈକୁ ଡେଇଁ ପଡ଼ିଲା ।

ଚୀନ୍‌ର ତ ଆଉ କେହି ନଥିଲେ । ପଡ଼ୋଶୀମାନେ ତାକୁ ନେଇ ପାଖରେ ରଖିଲେ ।

ଶିକ୍ଷକଗୋଷ୍ଠୀକୁ କ୍ଷମା ଦିଆଯାଇ ମୁକ୍ତ କରାଗଲା ବୋଲି ପରଦିନ ରାଜାଙ୍କର ଘୋଷଣା ପ୍ରକାଶ ପାଇଲା । ଗ୍ବନ୍ ଲୁଚିଥିବା ସ୍ଥାନରେ ଏଇ ଖବର ପାଇଲା । ସେ ଖୁସି ହୋଇ ସାଙ୍ଗେ ସାଙ୍ଗେ ଘରକୁ ଦୌଡ଼ିଲା । ସନ୍ଧ୍ୟାବେଳେ ଘରେ ପହଞ୍ଚି ଦେଖେତ—ସେ ନାହିଁ । ପଡ଼ୋଶୀମାନଙ୍କଠାରୁ ତା'ର ଭସ୍ତାବହ ଆତ୍ମହତ୍ୟାର ଘଟଣା ଶୁଣି ସେ ସ୍ତମ୍ଭୀଭୂତ ହୋଇଗଲା । ଚୀନ୍‌କୁ ପଡ଼ୋଶୀମାନଙ୍କ ପାଖରୁ ନେଇ ଆସିଲା ।

ସେତେବେଳକୁ ଚୀନ୍‌ର ଶୋଇବା ବେଳ । ଘୃଟ୍‌ଘୁଟ୍ ଅନ୍ଧାର । ଗ୍ବନ୍ ଲାମ୍ପଟିକୁ ଲଗାଇ ଘର ଟେବୁଲ ଉପରେ ଥୋଇଦେଲା । ଦୁଆର କଳ ଆସିବା ବେଳେ, ତା ସ୍ତ୍ରୀ ଇ କାନ୍ଥରେ ପଡ଼ିଲା । ଚୀନ ସାଙ୍ଗେ ସାଙ୍ଗେ ଆଣ୍ଠେଇପଡ଼ି ହାତଯୋଡ଼ି ମୁଣ୍ଡ ନୁଆଁଇ ସ୍ତ୍ରୀକୁ କହିଲା "ବାପା, ମୁଁ ଶୋଇବାକୁ ଯାଉଛି ।" ଗ୍ବନ୍ ସବୁ ଦେଖୁ-ଥାଏ । ପ୍ରକୃତ ସତକଥା ଜାଣିବାକୁ ତାର ଆଉ ବାକି ରହିଲା ନାହିଁ ।

ଗ୍ବନ୍ ଦୁଃଖରେ ଭାଙ୍ଗିପଡ଼ିଲା । ଯେଉଁ ପଥର ଉପରୁ ସେ ଡେଇଁପଡ଼ି ଆତ୍ମହତ୍ୟା କରିଥିଲା, ସେ ସେଠି ଗୋଟିଏ ବେଦୀ

ତିଆରି କଲା । ପ୍ରତି ସନ୍ଧ୍ୟାରେ ସେ ଚୀନ୍‌କୁ ସାଙ୍ଗରେ ନେଇ ସେଠାକୁ ଯାଏ । ସେଇଠି ସେମାନେ ବସି ଯୀଶୁଙ୍କୁ ମନେ ପକାନ୍ତି ।

**ନ ବୁଝ ନ ଶୁଝ ସନ୍ଦେହରେ ମାତିଲେ, କଣ ବିଷମୟ ଫଳ ଫଳେ, ତାହା ଚୀନ୍ ଜୀବନରୁ ଶିଖିବାର କଥା ।**



# ବାଲି କଙ୍କଡ଼ା

ବହୁବର୍ଷ ତଳେ ଗୋଟିଏ ଶିକାରୀ ଥିଲା । ନାଁ ତାର ଡାଟ୍ରାଙ୍ଗ । ପ୍ରତିଦିନ ବଡ଼ ଭୋରରୁ ସେ ଉଠେ । ଧନୁଶରଟି କାନ୍ଧରେ ପକାଇ ବଣକୁ ବାହାରିଯାଏ । ଦିନ ସାରା ଶିକାର କରେ । ମୁହଁ ସଞ୍ଜ-ବେଳକୁ ଘରକୁ ଫେରେ । ଡାଟ୍ରାଙ୍ଗର ଯିବା ବାଟରେ ଗୋଟିଏ ଭଙ୍ଗା ମନ୍ଦିର ପଡ଼େ । ସେଠାରେ ଦୁଇଟି ଛୋଟ ସାପ ରହନ୍ତି । ପ୍ରଥମେ ପ୍ରଥମେ ଡାଟ୍ରାଙ୍ଗ ତାଙ୍କୁ ଦେଖି ଡରି ଯାଉଥିଲା । କିନ୍ତୁ ସେମାନେ ତା ଆଡ଼କୁ ଟିକିଏ ବି ଅନାନ୍ତି ନାହିଁ ବୋଲି ସେ ଜାଣି ପାରିଲା । ଡର ତାର ଆସ୍ତେ ଆସ୍ତେ ଉଭେଇଗଲା । ସବୁବେଳେ ସାପମାନଙ୍କୁ ଦେଖି ଦେଖି ତାର ଦୟା ହେଲା । ସେଥିପାଇଁ, ଫେରିବା ବାଟରେ ସେ ସେମାନଙ୍କୁ କିଛି ମାଂସ ଖାଇବାକୁ ଦିଏ । ସେମାନେ ବି ମାଂସ ଖାଇବାରେ ଅଭ୍ୟସ୍ତ ହୋଇଗଲେ । ତା

ବାଟକୁ ଗୃହଁ ରହିଲେ । ତାପରେ ସେମାନଙ୍କ ସହିତ ତାର ବନ୍ଧୁତ୍ୱ ହୋଇଗଲା ।

ଦିନକର କଥା । ସେ ମନ୍ଦିର ପାଖ ଦେଇ ଗଲାବେଳେ ଗୋଟିଏ ଶବ୍ଦ ଶୁଣି ପାରିଲା । ସେ ସଙ୍ଗେ ସଙ୍ଗେ ଶବ୍ଦ ଆସୁଥିବା ଜାଗାକୁ ଧାଇଁଗଲା । ସେଠି ଦେଖିଲା ଗୋଟିଏ ଲମ୍ବା ହଳଦିଆ ସାପ ତା'ର ବନ୍ଧୁ ସାପ ଦୁଇଟିଙ୍କୁ ଆକ୍ରମଣ କରୁଛି । ସେ ତ ଶିକାରୀ । ହଠାତ୍ ଶର ବିନ୍ଧି ସେ ଲମ୍ବା ସାପଟିକୁ ମାରିଦେଲା । କିନ୍ତୁ ତାର ଶର ଆଘାତରେ ଛୋଟ ସାପରୁ ଗୋଟିଏ ମଧ୍ୟ ମରିଗଲା । ତାଙ୍କ୍ରାଙ୍ଗ ମନରେ ଭାରି ଦୁଃଖ ହେଲା । ଗାତ ଖୋଳି ସେ ମଲା ଛୋଟ ସାପକୁ ପୋତି ଦେଲା ।

ସେଇ ରାତିରେ ତାକୁ ଭଲ ନିଦ ହେଲାନାହିଁ । ସେ ଦଉଡିରେ ଶୋଇଲା । କାହାର କଅଁଳିଆ ସ୍ୱରରେ ତା'ର ନିଦ ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠିପଡ଼ି ଦେଖିଲା ଛୋଟ ସାପଟି ତା ବିଛଣା ପାଖରେ ଠିଆ ହୋଇ କହୁଛି "ଡରନାହିଁ ମୁଁ ତୋ ବନ୍ଧୁ । ତୁ ଆଜ ଭାରି ଭଲ କାମଟିଏ କଲୁ । ସେଥିପାଇଁ ମୁଁ ତୋତେ ପୁରସ୍କାର ଦେବାକୁ ଚାହୁଁଛି ।" ଏହା କହି ସାପ ତାଙ୍କ୍ରାଙ୍ଗ ହାତରେ ଗୋଟିଏ ଜିନିଷ ଦେଇ ଚାଲିଗଲା । ତାଙ୍କ୍ରାଙ୍ଗ ପରୀକ୍ଷାକରି ତାହା ଗୋଟିଏ ଉଜ୍ଜ୍ୱଳ ମଣି ବୋଲି ଜାଣିଲା । ପାଟିରେ ମଣିଟିଏ ରଖିଲେ ଯେକୌଣସି ଜୀବନ୍ତ ପ୍ରାଣୀ ସାଙ୍ଗେ କଥା ବାର୍ତ୍ତା କରି ହେବ ବୋଲି ସେ ଜାଣିଥିଲା । ସେ ମଣିଟି ପାଇ ଖୁସି ହେଲା । ତାର ସଦ୍ ବ୍ୟବହାର କରିବ ବୋଲି ଭାବିଲା ।

ତା' ପରଦିନ ତାଙ୍କ୍ରାଙ୍ଗ ଭୋରରୁ ଉଠି ଜଙ୍ଗଲକୁ ବାହାରିଲା । ମଣିଟିକୁ ସେ ତା ପାଟିରେ ଜାକିଥାଏ । ବାଟରେ ଯାଉଁ ଯାଉଁ ଗୋଟିଏ

କାଉ ଉଚ୍ଚ ଡାଳରେ ବସିଥିବାର ସେ ଦେଖିଲା । ପାଖରେ କୌଣସି ଶିକାର ଅଛି କି ନାହିଁ ଜାଣିବାକୁ ସେ କାଉକୁ ପଚାରିଲା । ଦୁଇଶହ ଫୁଟ ତାହାଣରେ ଗୋଟିଏ ହରିଣ ଅଛି ବୋଲି କାଉଟି ଖବର ଦେଲା । ଡାଡ୍ରାଙ୍ଗ ସଙ୍ଗେ ସଙ୍ଗେ ସେଠାକୁ ଗଲା । ହରିଣଟିକୁ ମାରି କରି ଆଣିଲା । ସେ କାଉକୁ କିଛି ମାଂସ ମଧ୍ୟ ଦେଲା । ସେହି ଦିନଠାରୁ ସେ କାଉକୁ ସାଥୀକଲା । ତା ପରଠୁ ଡାଡ୍ରାଙ୍ଗକୁ ବୁଲି-କରି ଆଉ ଶିକାର ଖୋଜିବାକୁ ପଡ଼ିଲା ନାହିଁ । କାଉ ଉଚ୍ଚ ଡାଳରେ ବସି ଶିକାରର ସନ୍ଧାନ କରେ । କାଉଠାରୁ ଖବର ପାଇ ଡାଡ୍ରାଙ୍ଗ ସେଠାକୁ ଯାଇ ଶିକାର କରେ ।

ଦିନେ କାଉର ଆସିବାରେ ଡେରି ହେଲା । ଡାଡ୍ରାଙ୍ଗ କାଉକୁ ଅପେକ୍ଷା ନକରି ଶିକାରକୁ ବାହାରି ପଡ଼ିଲା । ଯାହା ଶିକାର ମିଳିଲା, ସେଥିରୁ କାଉ ପାଇଁ କିଛି ମାଂସ ତା'ର ବସାବନ୍ଧା ଗଛ ପାଖରେ ରଖିଦେଇ ବୁଲିଗଲା । ଗୋଟିଏ ହେଟା ଆସି ସେ ମାଂସତକ ଖାଇ ଦେଲା । କାଉ ପରେ ଆସି ଦେଖିଲା, ତାପାଇଁ ଡାଡ୍ରାଙ୍ଗ ଖାଇବାକୁ କିଛି ରଖିନାହିଁ । ଡାଡ୍ରାଂଗ ଶିକାର କରିଛି, ଅଥଚ ତା'ପାଇଁ କିଛି ରଖିଲା ନାହିଁ ଭାବି ସେ ଭାରି ରାଗିଗଲା । ଖୁବ୍ ପାଟିତୁଣ୍ଡ କଲା । ଡାଡ୍ରାଂଗ ସେତିକିବେଳେ ଆସି ପହଞ୍ଚିଲା । କାଉକୁ ବୁଝେଇବାରେ ଲାଗିଲା । କିନ୍ତୁ କାଉ ବୁଝିଲା ନାହିଁ । ସେ ରାଗିକରି କାଉକୁ ଶର-ଟିଏ ମାରିଦେଲା । ପରଦିନ ଡାଡ୍ରାଂଗର ଶରରେ ଜଣେ ଶିକାରୀ ମରିଥିବାର ଶୁଣାଗଲା । ଶରଟି ତା ଛାତିରେ ପଶିଥିଲା ।

ଡାଡ୍ରାଂଗ ମଣିଷ ମାରିଥିବାରୁ ରାଜାଙ୍କ ଲୋକେ ତାକୁ ଧରି ନେଲେ । ତାକୁ ଜେଲ୍ ଦଣ୍ଡ ମିଳିଲା । ଜେଲରେ ଏକୁଟିଆ ରହି-ବାଟା ସମସ୍ତଙ୍କୁ ବାଧେ । ଡାଡ୍ରାଂଗ ତ ସବୁ ପଶୁପକ୍ଷୀ ଓ କୀଟ

ଟେଂଗଙ୍କ ଘନିଷ୍ଠ କଥାବାର୍ତ୍ତା କରିଯାଉରେ । ସେ ସେମାନଙ୍କଠାରୁ ଗୀତ ବି ଶୁଣେ । ତେଣୁ ଜେଲରେ ଥାଇ ବି ସେ ଏକାକୀ ବୋଲି ଅନୁଭବ କଲାନାହିଁ । ରାଜାଘର ଧାନ କୋଠିରୁ ଚୋରି ଗୋଟିଏ ଦୈନନ୍ଦିନ ଘଟଣା । ଜଗୁଆଳି ଥାଇ ବି ସବୁବେଳେ ଚୋରି ହୁଏ । ଚୋର ଧରା ପଡ଼ନ୍ତି ନାହିଁ । ରାଜା ଖୁବ୍ ରାଗନ୍ତି । ଚଟିଆ ଚୋରି କରୁଥିବା କଥା ସେ ଜେଲରଙ୍କୁ କହିଲା । ଜେଲର ରାଜ୍ୟ ଭଣ୍ଡାର ଜଗୁଆଳିଙ୍କୁ ଏ ଖବର ଜଣାଇଦେଲା । ରାଜା ମଧ୍ୟ ଏକଥା ଜାଣିଲେ । ଚଟିଆମାନଙ୍କୁ ସେଠୁ ଘୁଞ୍ଚାଇଦିଆଗଲା । ସେଠୁ ଚୋରି ବନ୍ଦ ହୋଇଗଲା ।

ଦିନେ ହଜାର ହଜାର ପିମ୍ପୁଡ଼ି ଧାଡ଼ି ବାନ୍ଧି ଯାଉଥାଆନ୍ତି । ଡାଟ୍ରାଂଗ ତାଙ୍କୁ ଦେଖି ପଚାରିଲା 'କାହିଁକି ପଳାଉଛକହେ ?"

ସେମାନେ କହିଲେ ' ନଈରେ ବଢ଼ି ଆସୁଛି ।"

ଡାଟ୍ରାଂଗ ଏକଥା ଜେଲରଙ୍କୁ ଜଣାଇଦେଲା । ସେ ଧାଇଁ ରାଜାଙ୍କୁ ପ୍ରବଳ ବଢ଼ି ଆସୁଥିବା ସମ୍ପର୍କରେ ସତର୍କ କରିଦେଲା ।

ରାଜା ପ୍ରଥମେ ହସି ଉଡ଼ାଇ ଦେଲେ । ପ୍ରତିକାର କିଛି କଲେ ନାହିଁ । କିନ୍ତୁ ଅଳ୍ପସମୟ ଭିତରେ ନଈରେ ବଢ଼ି ଭୁଷିଆସିଲା । ଘରଆଡ଼ ପାଣିରେ ବୁଡ଼ିଗଲା । ରାଜା ନିଜର ଭୁଲ୍ ବୁଝିପାରିଲେ । ସେ ଡାଟ୍ରାଂଗକୁ ଡକେଇ ପଠେଇଲେ ।

ରାଜା ତାକୁ ପରୀକ୍ଷା କଲେ । ବିଶ୍ୱାସ ହେବାରୁ ତାକୁ ଜେଲରୁ ଖଲାସ କରିଦେଲେ । ଯେଉଁ ଉପାୟରେ ଡାଟ୍ରାଂଗ ସବୁ କଥା ଜାଣିପାରୁଛି, ରାଜା ତାଠାରୁ ଶୁଣିଲେ । ତାପରେ ତାକୁ ନିଜର ମନ୍ତ୍ରୀ କରିଦେଲେ ।

ରାଜା ତାକୁ ସାଥିରେ ସବୁଜାଗାକୁ ନିଅନ୍ତି । ଯେଉଁ ଜୀବ ଯାହା କହନ୍ତି, ସେ ରାଜାଙ୍କୁ କହେ । ରାଜା ଶୁଣି ଭାରି ଖୁସି ହୁଅନ୍ତି ।

ରାଜାଙ୍କ ସବୁ ସଠିକ ଖବର ମିଳିଯାଏ । ଶାସନ କରିବାକୁ ରାଜାଙ୍କୁ ଅସୁବିଧା ହୁଏ ନାହିଁ । ସତ୍ୟରେ ଶାସନ ଚାଲିବାରୁ ଲୋକମାନେ ବି ଖୁସିରେ ରହିଲେ । ଦେଶରେ ଅନ୍ୟାୟ ଆଉ ରହିଲା ନାହିଁ । ଲୋକଙ୍କର ବି ଅସୁବିଧା ହେଲା ନାହିଁ ।

ଦିନକର କଥା । ରାଜା ସମୁଦ୍ର ପାର ହେଉଥାନ୍ତି, ସାଥିରେ ଡାଟାଂଗ । ଡ଼ଂଗା ଚାଲିଥାଏ । ଡାଟାଂଗ ଡ଼ଂଗା କରରେ ବସି ମାଛମାନଙ୍କ ସାଂଗରେ ଗପୁଥାଏ । ମାଛଟିଏ ଗୋଟିଏ ମଜା ଗୀତ ଗାଇଲା । ଡାଟାଂଗ ଗୀତ ଶୁଣି ହସି ହସି ବେଦମ ହୋଇଗଲା । ଏଇ ସମୟରେ ତା ପାଟିରୁ ମଣିଟି ପାଣିରେ ଝଡ଼ି ଖସିଗଲା । ଡାଟାଂଗ ଆଉ କିଛି ଶୁଣି ପାରିଲା ନାହିଁ । ସେ କାଠ ହୋଇଗଲା । ସେ ଖୁବ୍ କାନ୍ଦିଲା । କାନ୍ଦିକରି ରାଜାଙ୍କୁ ସବୁ କହିଲା । ରାଜା ଆଶ୍ୱାସନା ଦେଲେ । ବ୍ୟସ୍ତ ନ ହେବାକୁ କହିଲେ । ବୁଡ଼ାଳିମାନଙ୍କୁ ପଠେଇ ମଣି ଖୋଜିବାର ପ୍ରତିଶ୍ରୁତି ମଧ୍ୟ ଦେଲେ ।

ବୁଡ଼ାଳିମାନେ ସମୁଦ୍ର ଭିତରେ ବୁଡ଼ି ବୁଡ଼ି ବହୁ ଦିନ ଧରି ମଣି ଖୋଜିଲେ । କିନ୍ତୁ ପାଇଲେ ନାହିଁ । ଡାଟାଂଗ୍ ଖୁବ୍ ବିଚଳିତ ହୋଇପଡ଼ିଲା । ନିଜେ ଖୋଜିବାକୁ ଯିବାପାଇଁ ରାଜାଙ୍କ ଅନୁମତି ଲୋଡ଼ିଲା । ରାଜା ବି ଆପତ୍ତି କଲେ ନାହିଁ ।

ଡାଟାଂଗ୍ ସମୁଦ୍ର କୂଳକୁ ଗଲା । ସେଠି ବସି ବସି ସ୍ଥିର କଲା ଯେ ମଣି ପଡ଼ିଥିବା ଜାଗା ପର୍ଯ୍ୟନ୍ତ ସେ ସମୁଦ୍ରକୁ ପୋତି ଦେବ । ସେ ଜାଗାଟି ଶୁଖିଲେ ମଣି ଖୋଜିବାକୁ ଆଉ ତାକୁ ଅସୁବିଧା ହେବ ନାହିଁ । ସେ ବହୁତ ଲୋକ ଲଗାଇ ସମୁଦ୍ର ପୋତିବାକୁ ଆରମ୍ଭ କଲା । ଲୋକମାନେ ଖୁବ୍ ଖଟିଲେ । ସମୁଦ୍ରରେ ବାଲି ପକାଇଲେ । କିନ୍ତୁ ସମୁଦ୍ର ପୋତି ହେଲା ନାହିଁ । ଯେଉଁଠି ଥିଲା ସେଇଁଠି ରହିଲା । ଯାହା ବାଲିପଡ଼େ ଲହଡ଼ି ଆସି ତାକୁ ଧୋଇ-

ନିଏ । କିନ୍ତୁ ଚିହ୍ନିବ ଉଦେ ନାହିଁ । କିଛିଦିନ କାମ କଲାପରେ କାମିକାମାନେ ଥକି ପଡ଼ିଲେ । କାମ କିଛି ହେଉ ନ ଥିବାର ସେମାନେ ବି ଅନୁଭବ କଲେ । ଡାଠ୍ରାଂଗକୁ ଛାଡ଼ି ସେମାନେ ଚାଲିଗଲେ । ଡାଠ୍ରାଂଗ କିନ୍ତୁ ଫେରିଲା ନାହିଁ । ଏକାକୀ ରହିଗଲା । ରାତିଦିନ ସେ ଏକୁଟିଆ ବାଲି ପକାଏ । କେବେ ହେଲେ ସେ ବନ୍ଦ କରେନାହିଁ । ବାଲି ପକାଇ ପକାଇ ଶେଷରେ ସେ ମରିଗଲା ।

ଯେଉଁଠାରେ ଗୋଟେ ପ୍ରସ୍ତରିଆ ମୂର୍ତ୍ତି ଅଛିଏ ଥିଲା । ସେଠୁ ମଣି ହଜିଥିବା ଜାଗାଟି ପରିଷ୍କାର ଦେଖାଯାଏ ।

ରାଜାଙ୍କ ଆଦେଶ ଅନୁସାରେ ସେଇ ମୂର୍ତ୍ତି ଆଗରେ ତାକୁ ସମାଧି ଦିଆଗଲା ।

ତା ପରଦିନ ସକାଳ । ଶ୍ରେଷ୍ଠ କଙ୍କଡ଼ାଟିଏ ଆସି ବାଲି ତାଡ଼ିଲା । ଆଗରୁ ଏକଥା କେବେ ଦେଖାଯାଇ ନଥିଲା । ଲୋକେ କହିଲେ ଖାଲି ବାଲି ଟେକୁନାହିଁ । ଡାଠ୍ରାଙ୍ଗ ଆସି ସମୁଦ୍ର ପୋତାରେ ଲାଗିଲେ ।

ଏବେବି, ଆମେ ସମୁଦ୍ର କୂଳକୁ ଗଲେ ଦେଖୁ—ଶ୍ରେଷ୍ଠ ଡାଠ୍ରାଙ୍ଗ ବା କଙ୍କଡ଼ା ଛୁଆ ବାଲିଖୋଳାରେ ଖୁବ ବ୍ୟସ୍ତ । ସେମାନେ ବାଲିରେ ସ୍ତୂପ କରନ୍ତି । ଲହରୀ ତାକୁ ଧୋଇନିଏ । କିନ୍ତୁ ସେମାନଙ୍କ କାମ ବନ୍ଦ ହୁଏନାହିଁ । ପୁଣି ସେମାନେ ବାଲିରେ କାମ କରନ୍ତି ।

କେତେ ଯୁଗ ବିତିଗଲାଣି । ଏବେବି ଭିଏତ୍ନାମରେ ଲୋକେ କହନ୍ତି, ଡାଠ୍ରାଂଗର ଆତ୍ମା କଙ୍କଡ଼ା ଛୁଆ ରୂପରେ ଏବେ ମଧ୍ୟ ମଣି ଖୋଜୁଛି । ଏମାନେ ମଣିଷକୁ ବାରବାର ଚେତେଇ ଦିଅନ୍ତି ଯେ, ଆନନ୍ଦରେ ଖେଳ ହୋଇ ନିଜର ଆସ୍ଥାନ ହରାଅ ନାହିଁ ।

# ଭଲପାଉଥିବା ପଥର

ଭିଏତ୍‌ନାମର ଗୋଟିଏ ଶ୍ରେଷ୍ଠ ପ୍ରଦେଶ । ନ୍ଗୁହନ୍‌ଲସି ସେଠାର ଶାସକ । ତାଙ୍କ ସ୍ତ୍ରୀଙ୍କ ନାଁ ଆନ୍ ଓ ଝିଅଙ୍କ ନାଁ ନାମ୍ । 'ହି' ନଈକୂଳରେ ତାଙ୍କର ସୁନ୍ଦର ରାଜପ୍ରାସାଦ । ସେହି ପ୍ରାସାଦରେ ସେମାନେ ରହନ୍ତି ।

ଉଆସର ଉପର ମହଲାରେ ଗୋଟିଏ ଶ୍ରେଷ୍ଠ ଘର । ସେଠୁ ବହୁଦୂର ପର୍ଯ୍ୟନ୍ତ ନଈଟି ଦେଖାଯାଏ । ନାମ୍‌କୁ ସେ ଘରଟି ଖୁବ୍ ଭଲ ଲାଗେ । ସେଇ ଘରେ ବସି ବହୁଦୂର ପର୍ଯ୍ୟନ୍ତ ସେ ନଈକୁ ଦେଖେ । ଡଙ୍ଗା ମିବାର ଦୃଶ୍ୟ ତାକୁ ଭାରି ଭଲଲାଗେ । ଦିନସାରା ସେ ଝରକା ପାଖରେ ବସି ପଢ଼େ । ସିଲେଇ କରେ, ଫୁରୁସତ-ବେଳେ ନଈକୁ ଅନାଇ ରହେ । ରାତିରେ ସେଠି ସେ ଶୁଏ ।

ଦିନକର କଥା । ନାମ୍ ସକାଳେ ତା ଘରେ ବସି ପଢୁଥାଏ । ହଠାତ୍ ଗୋଟିଏ ସୁନ୍ଦର ଗୀତର ମୂର୍ଚ୍ଛନାରେ ତାର ଧ୍ୟାନ ଭାଙ୍ଗିଗଲା । ଗୀତଟି ଶୁଣିବା ପାଇଁ ସେ ନଈ ଭିତରକୁ ଚାହିଁଲା । ନଈ ଭିତରେ ଗୋଟିଏ ଯୁବକ ମାଛଧରାଳି ଗୀତ ଗାଉଥିଲା । ତା ଚେହେରାଟି ତାକୁ ଖୁବ ଭଲ ଲାଗିଲା । କିନ୍ତୁ ଦୂରରେ ଥିବାରୁ ତା ମୁହଁ ସେ ଦେଖି ପାରୁନଥିଲା । ଯୁବକଟିର ସ୍ୱର ତ ରାଜା ଝିଅର ମନ କିଣି ନେଇଥିଲା । ତେଣୁ ଯୁବକଟି ନିଶ୍ଚୟ ସୁନ୍ଦର ହୋଇଥିବ ବୋଲି ସେ ଅନୁମାନ କରିନେଲା । ଏହାପରଠୁ ସବୁଦିନ ସକାଳେ ନାମ୍ ଝରକା ପାଖରେ ଆସି ବସେ । ଯୁବକଟିର ଗୀତ ଶୁଣେ ।

ଗୀତ ନ ଶୁଣିବା ପର୍ଯ୍ୟନ୍ତ ଝରକା ପାଖ ଛାଡ଼ ସେ କୁଆଡ଼େ ଯାଏ ନାହିଁ ।

ଏମିତି କିଛିଦିନ ବିତିଗଲା । ସବୁଦିନ ପରି ଦିନେ ନାମ୍ ମାଛ ଧରାଳର ଗୀତକୁ ଅପେକ୍ଷା କରି ବେଳ ଆଖର ହେଲା, କିନ୍ତୁ ସେ ନଈକୁ ଆସିଲା ନାହିଁ କି ଗୀତ ବି ଗାଇଲା ନାହିଁ ।

ତା ପରଦିନ ମଧ୍ୟ ସେଇମିତି କଟିଗଲା । ତେବେ ବି ଡଙ୍ଗାର ଦେଖାନାହିଁ । ନମ୍‌କୁ କିଛି ଭଲ ଲାଗିଲା ନାହିଁ । ସେ କିଛି ଖାଇଲା ନାହିଁ କି କାହାରି ସାଙ୍ଗେ କଥା ମଧ୍ୟ କହିଲା ନାହିଁ । ଦିନ-ରାତି ଖାଲି ଝରକାପାଖରେ ଚୁପ୍‌ଚାପ୍ ହୋଇ ବସିରହେ । ପରିଚାରିକା ତାର ଏ ଅବସ୍ଥା ଦେଖି ଭାରି ଡରିଗଲା । ଯେତେ ବୁଝାଇଲେ ନାମ୍ ବୁଝିଲା ନାହିଁ । ଶେଷକୁ ସେ ରାଜାଙ୍କୁ ଯାଇ ଖବର ଦେଲା ।

ନୁହୁନ୍‌ଲସି ପରିଚାରିକାଠାରୁ ସବୁ କଥା ଶୁଣିଲେ । ସେ ମାଛଧରାଳୀକୁ ଧରିଆଣିଲାପାଇଁ ହୁକୁମ ଦେଲେ । ରାଜକର୍ମଚାରୀ-ମାନେ ଯୁବକଟିକୁ ଖୋଜି ପାଖ ଗାଁରେ ପାଇଲେ । ତା ନାଁ ହେଉଛି ସାନ୍ । ନୁହୁନ୍‌ଲସିଙ୍କ ନିକଟକୁ ତାକୁ ଅଣାଗଲା । ତାକୁ ସାଙ୍ଗରେ ନେଇ ରାଜା ନାମ୍ ପାଖକୁ ଉପରକୁ ଗଲେ । ସେମାନେ ଘରେ ପଶିବା ପୂର୍ବରୁ ରାଜାଙ୍କ ଆଦେଶରେ ସାନ୍ ଗୀତ ଗାଇଲା । ନାମ୍ ଗୀତ ଶୁଣି ହଠାତ୍ ଚମକିପଡ଼ି ଦୌଡ଼ି ଆସିଲା । ଗୀତଗାଉଥିବା କେଉଟକୁ ଦେଖାଇ ରାଜା, ନାମ୍‌କୁ କହିଲେ, "ଝିଅ ! ଏଇ ହେଉଛି ସେଇ ସାନ୍ ଯାହାର ଗୀତକୁ ତୁ ଭଲପାଉ ।"

ନାମ୍ ସାନ୍‌କୁ ଚାହିଁଲା । ସାନ୍‌ର ମୁହଁ ଭାରି ଅସୁନ୍ଦର ଓ ବିଭତ୍ସ । ଚାହିଁ ହୁଏ ନାହିଁ । ତାକୁ ଦେଖି ସାଙ୍ଗେ ସାଙ୍ଗେ ନାମ୍‌ର ମୁହଁ ଶୁଖିଗଲା । ସେ ତାର ଦୁଇହାତରେ ମୁହଁ ଘୋଡ଼ାଇ ଖୁବ୍

ଯୋରରେ ପଳାଇଗଲା । ଗଲାବେଳେ ଚିତ୍କାର କରୁଥିଲା । "ନାଁ ! ନାଁ ? ସେ ଏପରି ଅସୁନ୍ଦର ହୋଇ ପାରେନା । ମୁଁ ତାକୁ ଭଲ ପାଏ ନାହିଁ । ତାକୁ ତମେ ଏଠୁ ନେଇଯାଅ, ନେଇଯାଅ ।"

ସାନ୍ ମନଦୁଃଖରେ ତା ଗାଁକୁ ଫେରିଗଲା । ନାମ୍‌କୁ ଦେଖିବା ତାର ମୋଟେ ମୁହୂର୍ତ୍ତେ । ତା ପୁଣି ଅଶୋଭନୀୟ ପରିସ୍ଥିତିରେ । ତଥାପି ତାର ଅପୂର୍ବ ସୌନ୍ଦର୍ଯ୍ୟରେ ସେ ମୁଗ୍‌ଧ । ତାର କଥା ସବୁବେଳେ ତା ମନରେ ଆସେ । ସବୁବେଳେ ନାମ୍ କଥା ସେ ଭାବେ । ତାକୁ ଦେଖିବାକୁ ତା'ର ସବୁବେଳେ ଇଚ୍ଛା । ହେଲେ ଡ଼ଆସକୁ ସେ ଆସିପାରେ ନାହିଁ । ଦେଖି ବି ପାରେ ନାହିଁ । ସବୁବେଳେ ନାମ କଥା ଝୁରିଝୁରି ତାର ଖାଇବା ପିଇବା ବନ୍ଦ ହୋଇଗଲା ।ଅଳ୍ପଦିନ ଭିତରେ ସେ ରୁଗ୍‌ଣ ହୋଇଗଲା । କୌଣସି ଚିକିତ୍ସା ତାକୁ ରୋଗମୁକ୍ତ କରିପାରିଲା ନାହିଁ । ସେ ମରିଗଲା । ପ୍ରଥାନୁସାରେ, ତା ଶବକୁ ଗୋଟିଏ କାଠବାକସରେ ରଖା ହୋଇ ସନ୍ଧ୍ୟାରେ କବର ଦିଆଗଲା । ତା ପରିବାରର ଲୋକମାନେ ରାତିରେ କବର ପାଖରେ ରହିଲେ ।

ସକାଳେ ବନ୍ଧୁବାନ୍ଧବ କବରଖାନାରୁ ଘରକୁ ଫେରିଲେ । ସେମାନେ ଘରେ ଗୋଟିଏ ମୂଲ୍ୟବାନ ଶ୍ରେଷ୍ଠ ଧଳାପଥର ପଡ଼ିଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଗାଁରେ ଏଇ ପଥର ବିଷୟରେ ବେଶ୍ ଆଲୋଚନା ହେଲା । ଶେଷରେ ଲୋକଙ୍କ ନିଷ୍ପତ୍ତି ଅନୁସାରେ ନୁହ୍ମନ୍‌ଲିସିଙ୍କ ନିକଟକୁ ଏହା ପଠାଗଲା ।

ରାଜା ପଥରକୁ ଦେଖି କହିଲେ—"ଏହା ହେଉଛି ଭଲ ପାଇବାର ପଥର ।" ସେ ଗୋ' କପ୍ ଟିଏ ଅଣାଇ ସେଥିରେ ପଥରଟିକୁ ବୁଡ଼େଇ ଦେଲେ । କପ୍ ଭିତରେ ଗୋଟିଏ ମାଛଧରାଳୀର ଛୁଲ ଡ଼ଙ୍ଗା ଏପଟ ସେପଟ ହେବାର ଦେଖାଗଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ।

ରାଜା ନୁହ୍ନଲସି କହିଲେ—''ପ୍ରେମର ସ୍ମୃତି ସବୁବେଳ ପାଇଁ ରହେ । ତାହା ମୃତ୍ୟୁ ପରେ ମଧ୍ୟ ମିଳାଇ ଯାଏ ନାହିଁ ।

ରାଜା ଗ୍ଲୁ କପ୍‌ଟିକୁ ନାମ୍‌କୁ ଦେଇଦେଲେ । ନାମ୍‌ ଗ୍ଲୁ କପ୍‌ ଭିତରେ ସେଇ ଦୃଶ୍ୟ ଦେଖି ଶିହରି ଉଠିଲା । ତାର ଭୁଲ ଜାଣି ପାରିଲା । ଫେରିବା ପାଇଁ ବାଟ ତାର ନଥିଲା । ସେ ଭାବିଲା—ନାଉରିଟିର ଗୀତର ମୂର୍ଚ୍ଛନାରେ ସେ ପାଗଳ ହୋଇଛି । ଭଲ ବି ପାଇଛି । ପ୍ରେମ ବି ନେଇଛି, କିନ୍ତୁ ତା ବଦଳରେ କ'ଣ ଦେଇଛି ? ତାକୁ ଗାଳି ଦେଇ ବିଦାକରି ଦେଇଛି ।

ଦୁଃଖରେ ସେ ଭାଙ୍ଗି ପଡ଼ିଲା । କପ୍‌ଟିକୁ ନେଇ ଉପର ଘରକୁ ଚାଲିଗଲା । ସେଠି ସେ ଚୌକିରେ ବସେ । କପଟିକୁ ଆଣି କୋଳରେ ଥୁଏ । ଡଙ୍ଗାରେ ନାଉରିନି ଏପଟ ସେପଟ ହେଉଥିବାର ସେ ଦେଖେ । ଖୁବ୍‌ କାନ୍ଦେ । ତାର ଲୁହଗୁଡ଼ିକ ଗ୍ଲୁ କପ୍‌ ଭିତରେ ପଡ଼େ । ବିନ୍ଦୁ ବିନ୍ଦୁ ହୋଇ ତାହା ମିଳାଇଯାଏ । ଯେତେବେଳେ, ସବୁ ବିନ୍ଦୁ ମିଳେଇଯାଏ, ନାମ୍‌ ଅନୁଭବ କରେ ସତେ ଯେମିତି ତାର ଜୀବନ ନାହିଁ, କ୍ଳାନ୍ତ ଶ୍ରାନ୍ତ ସେ । ଚୁପ୍‌ ହୋଇ ଖାଲି ବସି ରହେ ।

ଏମିତି ଭାବି ଭାବି ନାମ୍‌ ବି ମରିଗଲା । ଦୁହେଁ ଅନ୍ୟ ଜଗତରେ ଏକାଠି ରହିଲେ ।

ଭିଏତ୍‌ନାମରେ ଏବେବି ଲୋକେ ବିଶ୍ୱାସ କରନ୍ତି, ପ୍ରତ୍ୟେକ ଯୁବକ ଯୁବତୀଙ୍କ ପ୍ରେମ ଏ ଜୀବନରେ ସରେ ନାହିଁ । ପରଜୀବନକୁ ବି ଲମ୍ବିଥାଏ । ଯଦି ଦୁଇଜଣ ପରସ୍ପରକୁ ଭଲ ପାଆନ୍ତି, ଅଥଚ ଏ ଜୀବନରେ ମିଳନ ସମ୍ଭବ ହୁଏ ନାହିଁ, ତେବେ ବି ପରବର୍ତ୍ତୀ ଜୀବନରେ ସେମାନେ ନିଶ୍ଚୟ ମିଳିତ ହୁଅନ୍ତି ।

# ଅପେକ୍ଷାରତ ପାହାଡ଼

(ଉତ୍ତର ଭିଏତ୍‌ନାମର ଲଙ୍ଗସନ୍ ନିକଟରେ ସମୁଦ୍ର ନିକଟରେ ଗୋଟିଏ ପାହାଡ଼ । ତା ଉପରେ ପଥରଟିଏ । ତାକୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ମନେହୁଏ ସତେଯେମିତି ଜଣେ ସ୍ତ୍ରୀଲୋକ ପିଲାଟିଏ କାଖେଇ ସମୁଦ୍ରକୁ ଚାହିଁ ଠିଆ ହୋଇଛି । ନାବିକମାନେ ତାକୁ କହନ୍ତି "ଅପେକ୍ଷାରତ ପାହାଡ଼ ।" ଜନଶ୍ରୁତି କହେ, ଗୋଟିଏ ସ୍ତ୍ରୀ ଲୋକ ସେଠାରେ ଅପେକ୍ଷା କରି କରି ପଥର ପାଲଟି ଯାଇଛି ।)

ଅନେକଦିନ ତଳେ ଭିଏତ୍‌ନାମର ଲଙ୍ଗ୍‌ସନ୍ ଗାଁରେ ଜଣେ କୃଷକ ଓ ତାର ସ୍ତ୍ରୀ ରହୁଥିଲେ । ସେମାନଙ୍କର ଦୁଇଟି ପିଲା— ଗୋଟିଏ ପୁଅ ଆଉ ଗୋଟିଏ ଝିଅ । ସେତେବେଳକୁ ପୁଅ ଲାନ୍‌ର ବୟସ ଚଉଦ ଓ ଝିଅ ନାମ୍‌ର ବୟସ ନଅ ବର୍ଷ । ସେ ବର୍ଷ ଭୀଷଣ ବତାସ ହେଲା । ସେଥିରେ କୃଷକ ଓ ତା ସ୍ତ୍ରୀ ମରିଗଲେ । ଲାନ୍ ଓ ନାମ୍ ପରସ୍ପରକୁ ଖୁବ ଭଲପାଆନ୍ତି । ସେ ଏକାଠି ମିଶି ତାଙ୍କ ଜମିବାଡ଼ି ଚାଷ କରି ଚଳିଯାଆନ୍ତି ।

ଦିନେ ଲଙ୍ଗ୍‌ସନ୍‌କୁ ଗୋଟିଏ ସର୍କସଦଳ ଆସିଥିଲା । ଗାଁ ଲୋକଙ୍କ ସହିତ ଲାନ୍ ଓ ନାମ୍ ସର୍କସ ଦେଖିବାକୁ ଯାଇଥିଲେ । ସେ ସର୍କସ ଦଳରେ ଜଣେ ଭବିଷ୍ୟତ ବକ୍ତା ଥିଲେ । ସବୁ ଲୋକଙ୍କ ପରି ନିଜ ଭବିଷ୍ୟତ ଜାଣିବା ପାଇଁ ଲାନ୍‌ର ମଧ୍ୟ ଖୁବ୍ ଆଗ୍ରହ ହେଲା । ସେ ଯାଇ ଭବିଷ୍ୟତ ବକ୍ତାଙ୍କୁ ତା'ର ଭବିଷ୍ୟତ କହିବାପାଇଁ ଅନୁରୋଧ କଲା । ଭବିଷ୍ୟତ ବକ୍ତା ଲାନ୍‌କୁ କହିଲେ "ସେ ଓ ତା ଭଉଣୀ ପରସ୍ପରକୁ ଖୁବ୍ ଭଲ ପାଆନ୍ତି । ଭବିଷ୍ୟତରେ ସେମାନେ

ସ୍ଵାମୀ ସ୍ତ୍ରୀ ହେବେ ।" ଲିନ୍ ଯଦିଓ ଏହା ବିଶ୍ବାସ କରିବାକୁ ପ୍ରସ୍ତୁତ ନଥିଲା, ତଥାପି ସେ ଜାଣିଥିଲା ଯେ ଭବିଷ୍ୟତ ବକ୍ତାଙ୍କ କଥା ଅନ୍ୟଥା ହେବନାହିଁ । ଏକଥା ଘଟିବାକୁ ଦେବନାହିଁ ବୋଲି ସେ ମନେ ମନେ ସ୍ଥିର କଲା । ସେ କିନ୍ତୁ ଜ୍ୟୋତିଷଙ୍କ ଭବିଷ୍ୟତବାଣୀ ବିଷୟରେ ନାମ କୁ କିଛି କହିଲା ନାହିଁ ।

ତା ପରଦିନ ରବିବାର । ଭାଇଭଉଣୀ ଦୁହେଁ ଜାଳେଣୀ କାଠ ପାଇଁ ଜଙ୍ଗଲକୁ ଗଲେ । ବଣରେ ନାମ୍ ଖାଇବା ଜିଆଁରି କରୁ-ଥାଏ । ଲିନ୍ ଜଙ୍ଗଲରୁ କାଠ ସଂଗ୍ରହ କରୁଥାଏ । ବେଳେ ବେଳେ ନାମ୍ କୁ ଆସି ଉଣ୍ଡୁଥାଏ । ଯେତେବେଳେ ନାମ୍ ଉଣ୍ଡାବଡ଼ାରେ ଖୁବ୍ ବ୍ୟସ୍ତଥିଲା, ଲିନ୍ ଛପି ଛପି ଯାଇ କୁରାଢ଼ିରେ ତା ପଛପଟ ମୁଣ୍ଡରେ ଚୋଟେ ଦେଲା । ତାପରେ ବୁଲାପଡ଼ି ସେ ଖୁବ୍ ଜୋରରେ ଦୌଡ଼ିଲା । ଅଣନିଶ୍ବାସୀ ହୋଇ ସେ ଦୌଡ଼ୁଥାଏ । ପଛକୁ ଥରଟିଏ ବି ବୁଲାପଡ଼ି ଅନାଇ ନାହିଁ । ପୂରା ଗୋଟିଏ ଦିନ ସେ ଦୌଡ଼ିଲା । ସେତେବେଳକୁ ସେ ଲଙ୍ଗ୍ ସନ୍ ଠାରୁ ବହୁଦୂରରେ । ସେଠି ଥରଟିଏ ବିଶ୍ରାମ ନେଲା । ତା ପରେ ପାଖରେ ଥିବା ଗାଁକୁ ଗଲା ।

ସେଠାରେ ସେ ତାର ନାଁ ବଦଳେଇ ଟାନ୍ ବୋଲି କହିଲା । ବାପା ମା ହେଉଣ୍ଡି ପିଲା ବୋଲି ପରିଚୟ ଦେଇ ଗୋଟିଏ କମାର ଘରେ ଗୃହକର୍ମ କଲା । ଟାନ୍ ଖୁବ୍ ପରିଶ୍ରମୀ । ସେ କଠିନ ପରିଶ୍ରମ କରେ । କମାର ତା ଉପରେ ଖୁସି ହୋଇଗଲା । ସବୁ କାମ ତାକୁ ଶିଖାଇ ଦେଲା । ଅଳ୍ପଦିନ ଭିତରେ ସେ ଜଣେ ସୁଦକ୍ଷ କମାର ପାଲଟିଗଲା ।

କମାରଟି ଟାନ୍ କୁ ନିଜ ପୁଅ ପରି ଭଲପାଏ । କିଛିଦିନ ପରେ ସେ ଟାନ୍ କୁ ସମସ୍ତ ଦାୟିତ୍ବ ଦେଇ ଅବ୍ୟାହତି ନେଇଗଲା । ଅଳ୍ପଦିନ ଭିତରେ ତାର କାଳ ବି ହୋଇଗଲା । ମରିବା ପୂର୍ବରୁ

ସେ ତାର ସମସ୍ତ ସମ୍ପତ୍ତି ଟାନ୍ ନାଁରେ ଉଇଲ କରି ଦେଇଥିଲା । ଟାନ୍‌ର କିଛି ସମ୍ପତ୍ତି ହୋଇଗଲା । ସେ ତ ଖୁବ୍ ପରିଶ୍ରମୀ । ତେଣୁ ସେ ବେଶ୍ ଭଲରେ ଚଳିଲା ।

ମିଷ୍ଟର ଉଇଲ୍‌ସନ୍ ପାଖ ଗାଁର ଜଣେ କୃଷକ । ତାଙ୍କର ସମସ୍ତ କାମ ସେ ଟାନ୍ କାରଖାନାରେ କରାନ୍ତି । ଯିବା ଆସିବାରେ ତାଙ୍କ ସାଙ୍ଗରେ ଟାନ୍‌ର ସମ୍ପର୍କ ଖୁବ୍ ଭଲ । ଥରେ ଉଇଲ୍‌ସନ୍, ତାଙ୍କ ସ୍ତ୍ରୀ ଓ ଝିଅ ଆନ୍ ତା ଘରକୁ ଆସିଲେ । ଟାନ୍ ତ ଏକୁଟିଆ । ତା ଘରଟି କିନ୍ତୁ ବେଶ ବଡ଼ । ତେଣୁ ସେମାନେ ସେଠାରେ କିଛି-ଦିନ ରହିଗଲେ ।

ଆନ୍ ତ ଦେଖିବାକୁ ଭାରି ସୁନ୍ଦର । ଟାନ୍, ଆନ୍ ପ୍ରେମରେ ପଡ଼ିଗଲା । ଉଇଲ୍‌ସନ୍ ଦମ୍ପତ୍ତି ଏଥିରେ ଖୁସି ହୋଇଗଲେ । ସେମାନଙ୍କର ବାହାଘର ମଧ୍ୟ କରିଦେଲେ । ତାପରେ ଉଇଲ୍‌ସନ୍ ତାଙ୍କ ସ୍ତ୍ରୀକୁ ନେଇ ଘରକୁ ଫେରିଗଲେ ।

ଟାନ୍‌ର ପରିବାର ହେଲା—ସେ ଓ ତା ସ୍ତ୍ରୀ । ଉଭୟେ ଖୁବ୍ ଖୁସିରେ ରହିଲେ । କିଛିଦିନ ପରେ ସେମାନଙ୍କର ଗୋଟିଏ ପୁଅ ବି ହେଲା । ଛୋଟ ପରିବାରଟି ବେଶ୍ ଆନନ୍ଦରେ ସମୟ କଟାଉଥାନ୍ତି ।

ଟାନ୍‌ର ବ୍ୟବସାୟ ଖୁବ୍ ଭଲ ଚାଲୁଥାଏ । ବ୍ୟବସାୟ ସନ୍ଧାନରେ ବେଳେବେଳେ ସେ ଆଗରୁ ବିଦେଶ ଯାଉଥିଲା । ଏବେ କିନ୍ତୁ ତା ପୁଅକୁ ଛାଡ଼ି ସେ ଆଉ ବିଦେଶ ଯାଏ ନାହିଁ । ସେ ଏଣିକି ଜଣେ ବିଶ୍ୱାସୀ ଚାକରକୁ ସବୁକଥା ବୁଝେଇ ବିଦେଶ ପଠାଏ ।

ଦିନକର କଥା, ଦର୍ପଣ ଆଗରେ ଠିଆ ହୋଇ ଆନ୍ ମୁଣ୍ଡ କୁଣ୍ଡାଉଥାଏ । ତା ବାଳଗୁଡ଼ିକ ଭାରି ସୁନ୍ଦର । ଟାନ୍ ପଛପଟେ

